ଦାଦା ଭଗବାନ କଥିତ

# କ୍ରୋଧ

କ୍ରୋଧ ଅର୍ଥାତ୍ ପ୍ରକଟ ଅଗ୍ନି, ପ୍ରଥମେ ନିଜେ ଜଳେ, ପୁଣି ଆଖପାଖବାଲାଙ୍କୁ ଜଳାଏ ।

Oriya

ପ୍ରକାଶକ : ଶ୍ରୀ ଅଜିତ୍ ସି. ପଟେଲ
ଦାଦା ଭଗବାନ ଆରାଧନା ଟ୍ରଷ୍ଟ
୫, ମମତା ପାର୍କ ସୋସାଇଟୀ, ନବଗୁଜରାଟ
କଲେଜ ପଛ, ଉସ୍ମାନପୁରା,
ଅହମଦାବାଦ୍-୩୮୦୦୧୪, ଗୁଜୁରାଟ
ଫୋନ୍ : (୦୭୯) ୩୯୮୩୦୧୦୦



ପ୍ରଥମ ସଂସ୍କରଣ : ବହି ସଂଖ୍ୟା ୨୦୦୦ ନଭେମ୍ବର ୨୦୧୬

ଭାବ ମୂଲ୍ୟ : 'ପରମ ବିନୟ' ଏବଂ
'ମୁଁ କିଛି ମଧ୍ୟ ଜାଣି ନାହିଁ', ଏହି ଭାବ !

ଦ୍ରବ୍ୟ ମୂଲ୍ୟ : ୧୦ ଟଙ୍କା

ମୁଦ୍ରକ : ଅମ୍ବା ଓଫ୍‌ସେଟ୍
ପାର୍ଶ୍ୱନାଥ ଚାମ୍ବର୍ସ, ନୂଆ ରିଜର୍ଭ ବ୍ୟାଙ୍କ ପାଖ,
ଇନ୍‌କମ୍‌ଟ୍ୟାକ୍ସ, ଅହମଦାବାଦ୍ - ୩୮୦୦୧୪
ଫୋନ : (୦୭୯) ୨୭୫୪୨୯୬୪

# ତ୍ରିମନ୍ତ୍ର








**ନମୋ ଅରିହଂତାଣଂ**
**ନମୋ ସିଦ୍ଧାଣଂ**
**ନମୋ ଆୟରିୟାଣଂ**
**ନମୋ ଉବଜ୍ଝାୟାଣଂ**
**ନମୋ ଲୋଏ ସବ୍ବସାହୁଣଂ**
**ଏସୋ ପଞ୍ଚ ନମୁକ୍କାରୋ,**
**ସବ୍ବ ପାବପ୍ପଣାସଣୋ**
**ମଙ୍ଗଲାଣଂ ଚ ସବ୍ବେସିଂ,**
**ପଢମଂ ହବଇ ମଙ୍ଗଲମ୍ ।।୧।।**
**ଓଁ ନମୋ ଭଗବତେ ବାସୁଦେବାୟ ।।୨।।**
**ଓଁ ନମଃ ଶିବାୟ ।। ୩ ।।**
**।। ଜୟ ସଚ୍ଚିଦାନନ୍ଦ ।।**



# ‘ଦାଦା ଭଗବାନ’ କିଏ ?

ଜୁନ୍ ୧୯୫୮ର ଏକ ସନ୍ଧ୍ୟାର ପାଖାପାଖି ଛଅଟା ସମୟ, ଭିଡ଼ରେ ଭରି ହୋଇଥିବା ସୁରତ ସହରର ରେଲୱେ ଷ୍ଟେସନ୍, ପ୍ଲାଟ୍‌ଫର୍ମ ନମ୍ବର ୩ର ବେଞ୍ଚ ଉପରେ ବସିଥିବା ଶ୍ରୀ ଅମ୍ବାଲାଲ୍ ମୂଲ୍‌ଜୀଭାଈ ପଟେଲ୍ ରୂପୀ ଦେହମନ୍ଦିରରେ ପ୍ରାକୃତିକ ରୂପରେ, ଅକ୍ରମ ରୂପରେ, କେତେ ଜନ୍ମରୁ ବ୍ୟକ୍ତ ହେବାପାଇଁ ଆତୁର ‘ଦାଦା ଭଗବାନ’ ପୂର୍ଣ୍ଣ ରୂପରେ ପ୍ରକଟ ହେଲେ । ଏବଂ ପ୍ରକୃତି ସର୍ଜିତ କଲା ଅଧ୍ୟାତ୍ମର ଅଦ୍ଭୁତ ଆଶ୍ଚର୍ଯ୍ୟ । ଏକ ଘଣ୍ଟାରେ ତାଙ୍କୁ ବିଶ୍ୱ ଦର୍ଶନ ହେଲା । ‘ମୁଁ କିଏ ? ଭଗବାନ କିଏ ? ଜଗତ କିଏ ଚଲାଉଛି ? କର୍ମ କ’ଣ ? ମୁକ୍ତି କ’ଣ ?’ ଇତ୍ୟାଦି ଜଗତର ସମସ୍ତ ଆଧ୍ୟାତ୍ମିକ ପ୍ରଶ୍ନର ସଂପୂର୍ଣ୍ଣ ରହସ୍ୟ ପ୍ରକଟ ହେଲା । ଏହିପରି ପ୍ରକୃତି, ବିଶ୍ୱ ସମ୍ମୁଖରେ ଏକ ଅଦ୍ୱିତୀୟ ପୂର୍ଣ୍ଣ ଦର୍ଶନ ପ୍ରସ୍ତୁତ କଲା ଏବଂ ତାହାର ମାଧ୍ୟମ ହେଲେ ଶ୍ରୀ ଅମ୍ବାଲାଲ୍ ମୂଲ୍‌ଜୀଭାଈ ପଟେଲ, ଯିଏ ଗୁଜରାଟର ଚରୋତର କ୍ଷେତ୍ରର ଭାଦରଣ ଗାଁ’ର ପାଟୀଦାର, କଂଟ୍ରାକ୍ଟ ବ୍ୟବସାୟ କରିବାବାଲା, ତଥାପି ପୂର୍ଣ୍ଣ ରୂପରେ ବୀତରାଗ ପୁରୁଷ !

‘ବ୍ୟାପାରରେ ଧର୍ମ ରହିବା ଉଚିତ, ଧର୍ମରେ ବ୍ୟାପାର ନୁହେଁ’, ଏହି ସିଦ୍ଧାନ୍ତ ସହ ସେ ସାରା ଜୀବନ ବିତାଇଲେ । ଜୀବନରେ କେବେ ମଧ୍ୟ କାହାରିଠାରୁ ପଇସା ନେଇ ନାହାନ୍ତି, ବରଂ ନିଜ ରୋଜଗାରରୁ ଭକ୍ତମାନଙ୍କୁ ଯାତ୍ରା କରାଉଥିଲେ ।

ତାଙ୍କୁ ଯେପରି ପ୍ରାପ୍ତ ହେଲା, ସେହିପରି କେବଳ ଦୁଇ ଘଣ୍ଟାରେ ଅନ୍ୟ ମୁମୁକ୍ଷୁମାନଙ୍କୁ ମଧ୍ୟ ସେ ଆତ୍ମଜ୍ଞାନର ପ୍ରାପ୍ତି କରାଉଥିଲେ, ତାଙ୍କର ଅଦ୍ଭୁତ ସିଦ୍ଧ ହୋଇଥିବା ଜ୍ଞାନ ପ୍ରୟୋଗ ଦ୍ୱାରା । ତାହାକୁ ଅକ୍ରମ ମାର୍ଗ କହିଲେ । ଅକ୍ରମ, ଅର୍ଥାତ ବିନା କ୍ରମରେ ଏବଂ କ୍ରମ ଅର୍ଥାତ ସିଢ଼ି ପରେ ସିଢ଼ି, କ୍ରମାନୁସାରେ ଉପରକୁ ଚଢ଼ିବା । ଅକ୍ରମ ଅର୍ଥାତ୍ ଲିଫ୍ଟ ମାର୍ଗ, ସର୍ଟ କଟ୍ ।

ସେ ନିଜେ ପ୍ରତ୍ୟେକଙ୍କୁ ‘ଦାଦା ଭଗବାନ କିଏ ?’ର ରହସ୍ୟ ଜଣାଇବାକୁ ଯାଇ କହୁଥିଲେ ଯେ, ‘‘ଏ ଯିଏ ଆପଣଙ୍କୁ ଦେଖାଯାଉଛନ୍ତି ସେ ଦାଦା ଭଗବାନ ନୁହଁନ୍ତି, ସେ ତ ‘ଏ.ଏମ୍. ପଟେଲ୍’ ଅଟେ । ମୁଁ ଜ୍ଞାନୀପୁରୁଷ ଅଟେ ଏବଂ ଭିତରେ ଯିଏ ପ୍ରକଟ ହୋଇଛନ୍ତି, ସେ ‘ଦାଦା ଭଗବାନ’ ଅଟନ୍ତି । ଦାଦା ଭଗବାନ ତ’ ଚଉଦ ଲୋକର ନାଥ ଅଟନ୍ତି । ସେ ଆପଣଙ୍କ ଭିତରେ ମଧ୍ୟ ଅଛନ୍ତି, ସମସ୍ତଙ୍କ ଭିତରେ ଅଛନ୍ତି । ଆପଣଙ୍କ ଭିତରେ ଅବ୍ୟକ୍ତ ରୂପରେ ଅଛନ୍ତି ଏବଂ ‘ଏଠାରେ’ ମୋ ଭିତରେ ସଂପୂର୍ଣ୍ଣ ରୂପରେ ବ୍ୟକ୍ତ ହୋଇଛନ୍ତି । ଦାଦା ଭଗବାନଙ୍କୁ ମୁଁ ମଧ୍ୟ ନମସ୍କାର କରେ ।’’

# ନିବେଦନ

ଆତ୍ମବିଜ୍ଞାନୀ ଶ୍ରୀ ଅମ୍ବାଲାଲ ମୂଳଜୀଭାଇ ପଟେଲ, ଯାହାଙ୍କୁ ଲୋକେ 'ଦାଦା ଭଗବାନ' ନାମରେ ମଧ୍ୟ ଜାଣନ୍ତି,ତାଙ୍କ ଶ୍ରୀମୁଖରୁ ଅଧ୍ୟାତ୍ମ ତଥା ବ୍ୟବହାର ଜ୍ଞାନ ସମ୍ବନ୍ଧୀୟ ଯେଉଁ ବାଣୀ ବାହାରିଛି, ସେସବୁକୁ ରେକର୍ଡ କରି,ସଙ୍କଳନ ତଥା ସମ୍ପାଦନ କରି ପୁସ୍ତକ ରୂପରେ ପ୍ରକାଶିତ କରାଯାଉଛି ।

ପ୍ରସ୍ତୁତ ଅନୁବାଦରେ ଏହା ବିଶେଷ ଧ୍ୟାନ ରଖାଯାଇଛି ଯେ, ପାଠକଙ୍କୁ ଦାଦାଶ୍ରୀଙ୍କର ହିଁ ବାଣୀ ଶୁଣାଯାଉଛି,ଏପରି ଅନୁଭବ ହେଉ,ଯେଉଁ କାରଣରୁ ବୋଧ ହୁଏ କିଛି ଜାଗାରେ ଅନୁବାଦର ବାକ୍ୟ ରଚନା ଓଡ଼ିଆ ବ୍ୟାକରଣ ଅନୁସାରେ ତ୍ରୁଟିପୂର୍ଣ୍ଣ ଲାଗିପାରେ,କିନ୍ତୁ ଏଠାରେ ଭାବନାକୁ ବୁଝି ପଢାଯିବ ତେବେ ଅଧିକ ଲାଭକାରୀ ହେବ ।

ଜ୍ଞାନୀଙ୍କ ବାଣୀକୁ ଓଡ଼ିଆ ଭାଷାରେ ଯଥାର୍ଥ ରୂପରେ ଅନୁବାଦ କରିବାର ପ୍ରୟାସ କରାଯାଇଛି । ପ୍ରସ୍ତୁତ ପୁସ୍ତକରେ ଅନେକ ଜାଗାରେ ବନ୍ଧନୀରେ ଦର୍ଶାଯାଇଥିବା ଶବ୍ଦ ବା ବାକ୍ୟ ପରମପୂଜ୍ୟ ଦାଦାଶ୍ରୀଙ୍କ ଦ୍ୱାରା କୁହାଯାଇଥିବା ବାକ୍ୟକୁ ଅଧିକ ସ୍ପଷ୍ଟତାପୂର୍ବକ ବୁଝାଇବା ହେତୁ ଲେଖାଯାଇଛି । ଯେବେ କି କିଛି ଜାଗାରେ ଇଂରାଜୀ ଶବ୍ଦକୁ ଓଡ଼ିଆ ଅର୍ଥରୂପରେ ରଖାଯାଇଛି । ଦାଦାଶ୍ରୀଙ୍କ ଶ୍ରୀମୁଖରୁ ବାହାରିଥିବା କିଛି ଗୁଜରାଟୀ ଶବ୍ଦ ଯେମିତିକୁ ସେମିତି ରଖାଯାଇଛି,କାରଣ ସେ ଶବ୍ଦଗୁଡ଼ିକ ପାଇଁ ଓଡ଼ିଆରେ ଏପରି କିଛି ଶବ୍ଦ ନାହିଁ,ଯାହା ତାହାର ପୂର୍ଣ୍ଣ ଅର୍ଥ ଦେଇପାରିବ ।

ଅନୁବାଦଜନିତ ତ୍ରୁଟି ପାଇଁ ଆପଣଙ୍କ ପାଖରେ କ୍ଷମାପ୍ରାର୍ଥୀ ଅଟୁ ।



# ସମ୍ପାଦକୀୟ

କ୍ରୋଧ ଏକ ଦୁର୍ବଳତା ଅଟେ, କିନ୍ତୁ ଲୋକେ ତାହାକୁ ବାହାଦୁରୀ ମାନନ୍ତି । କ୍ରୋଧ କରୁଥିବା ବ୍ୟକ୍ତି ଅପେକ୍ଷା କ୍ରୋଧ କରୁନଥିବା ବ୍ୟକ୍ତିର ପ୍ରଭାବ କିଛି ଅଲଗା ପ୍ରକାର ହୋଇଥାଏ !

ସାଧାରଣତଃ ଯେବେ ନିଜ ମତ ଅନୁସାରେ ହୁଏ ନାହିଁ, ଆମ କଥା ସାମନା ବ୍ୟକ୍ତି ବୁଝିପାରେ ନାହିଁ, ଡିଫରେନ୍ସ ଅଫ ଭ୍ୟୁ-ପଏଣ୍ଟ ହୋଇଯାଏ ସେତେବେଳେ କ୍ରୋଧ ହୋଇଯାଏ, କେବେ କେବେ ଆମେ ଠିକ୍ ଥିବା କିନ୍ତୁ କେହି ଆମକୁ ଭୁଲ ବୋଲି ଆକ୍ଷେପ କରେ, ସେତେବେଳେ କ୍ରୋଧ ହୋଇଯାଏ । କିନ୍ତୁ ଆମେ ଠିକ୍ ଅଟୁ ତାହା ଆମର ଦୃଷ୍ଟି ବିନ୍ଦୁରୁ ହିଁ ନା ? ସାମ୍ନାବାଲା ମଧ ନିଜର ଦୃଷ୍ଟିବିନ୍ଦୁରୁ ନିଜକୁ ଠିକ୍ ବୋଲି ମାନିବ ନା ! କେବେ କେବେ ସୁଝ୍ ପଡ଼େ ନାହିଁ( ବୁଦ୍ଧି କାମ କରେ ନାହିଁ) ଆଗକୁ କିଛି ଦେଖାଯାଏ ନାହିଁ ଏବଂ କ'ଣ କରିବାର ଅଛି କିଛି ବୁଝାପଡ଼େ ନାହିଁ, ସେତେବେଳେ କ୍ରୋଧ ହୋଇଯାଏ ।

ଯେତେବେଳେ ଅପମାନ ହୁଏ, ସେତେବେଳେ କ୍ରୋଧ ହୋଇଯାଏ । ଯେତେବେଳେ କ୍ଷତି ହୁଏ, ସେତେବେଳେ କ୍ରୋଧ ହୋଇଯାଏ । ଏହିପରି ମାନର ରକ୍ଷଣ କରିବାକୁ ଯାଇ, ଲୋଭର ରକ୍ଷଣ କରିବାକୁ ଯାଇ କ୍ରୋଧ ହୋଇଯାଏ । ସେଠାରେ ମାନ ଏବଂ ଲୋଭ ଭଳି କଷାୟରୁ ମୁକ୍ତ ହେବାର ଜାଗୃତି ଉତ୍ପନ୍ନ ହେବା ଜରୁରୀ ଅଟେ । ଚାକର ହାତରୁ ଚା' କପ୍ ପଡ଼ି ଭାଙ୍ଗିଯାଏ, ସେତେବେଳେ କ୍ରୋଧ ହୋଇଯାଏ, କିନ୍ତୁ ଜୋଇଁ ହାତରୁ ଭାଙ୍ଗେ ତେବେ ? ସେଠି କ୍ରୋଧ କିପରି କଣ୍ଟ୍ରୋଲ୍‌ରେ ରୁହେ ! ଅର୍ଥାତ ମାନ୍ୟତା ଉପରେ ହିଁ ଆଧାରିତ ନା ?

କେହି ଆମର କ୍ଷତି ବା ଅପମାନ କରେ ତେବେ ତାହା ଆମର ହିଁ କର୍ମର ଫଳ ଅଟେ, ସାମନା ବ୍ୟକ୍ତି ନିମିତ୍ତ ଅଟେ, ଏପରି ସମଝ ଫିଟ୍ ହୋଇଯିବ ତେବେ କ୍ରୋଧ ଚାଲିଯିବ ।

ଯେଉଁଠି-ଯେଉଁଠି ଏବଂ ଯେବେ-ଯେବେ କ୍ରୋଧ ଆସୁଛି ତାହା ନୋଟ୍ କରିନେବ ଏବଂ ତା' ଉପରେ ଜାଗୃତି ରଖିବ । ଏବଂ ଆମ କ୍ରୋଧ ପାଇଁ ଯାହାକୁ ଦୁଃଖ ହୋଇଥିବ, ତା'ର ପ୍ରତିକ୍ରମଣ କରିବ, ପଶ୍ଚାତାପ କରିବ ଏବଂ ଆଉ କେବେ କରିବି ନାହିଁ ଏପରି ଦୃଢ଼ 'ନିଶ୍ଚୟ' କରିବ । କାରଣ ଯାହା ଉପରେ କ୍ରୋଧ ହୁଏ, ତା'କୁ ଦୁଃଖ ହୁଏ ଆଉ ସେ ପୁଣି ବୈର( ଶତ୍ରୁତା) ବାନ୍ଧେ । ତେବେ ପୁଣି ପରଜନ୍ମରେ ପୁଣି ଦେଖାହେବ !

ମା-ବାପା ନିଜ ପିଲାମାନଙ୍କ ଉପରେ ଏବଂ ଗୁରୁ ନିଜ ଶିଷ୍ୟ ମାନଙ୍କ ଉପରେ କ୍ରୋଧ କଲେ ତା'ଦ୍ୱାରା ପୁଣ୍ୟ ବନ୍ଧା ହୁଏ, କାରଣ ତା' ପଛରେ ଉଦ୍ଦେଶ୍ୟ ତା'ର ଭଲ ପାଇଁ, ସୁଧାରିବା ପାଇଁ ଅଟେ । ସ୍ୱାର୍ଥ ପାଇଁ ହେବ ତେବେ ପାପ ବନ୍ଧା ହେବ । ବୀତରାଗମାନଙ୍କର ସମଝ୍‌ର ସୂକ୍ଷ୍ମତା ତ' ଦେଖ !

ପ୍ରସ୍ତୁତ ପୁସ୍ତକରେ କ୍ରୋଧ, ଯାହା ବିଷମ ସମସ୍ୟା ସୃଷ୍ଟି କରୁଥିବା ଖୋଲା କଷାୟ ଅଟେ, ତା' ସମ୍ବନ୍ଧୀୟ ସମସ୍ତ କଥା ବିସ୍ତାର ପୂର୍ବକ ସଂକଳନ କରି ଏଠାରେ ପ୍ରକାଶିତ ହୋଇଛି, ଯାହା ପାଠକଙ୍କୁ କ୍ରୋଧରୁ ମୁକ୍ତ ହେବା ପାଇଁ ପୂର୍ଣ୍ଣତୟା ସହାୟକ ହେବ, ଏହି ଅଭ୍ୟର୍ଥନା ।

**-ଡ଼ା. ନୀରୁବହନ ଅମୀନ**

# କ୍ରୋଧ

## କିଏ ମାନେ, 'ମୁଁ ଭୁଲ ?'

**ପ୍ରଶ୍ନକର୍ତ୍ତା :** ଆମେ ଠିକ୍ ଥିବୁ, ତଥାପି କେହି ଆମ ସହ ଭୁଲ କରିଦିଏ, ତେବେ ପୁଣି ଭିତରୁ ତା' ଉପରେ କ୍ରୋଧ ଆସିଯାଏ । ଏପରି କ୍ରୋଧ ତୁରନ୍ତ ନ ଆସୁ, ସେଥିପାଇଁ କ'ଣ କରିବୁ ?

**ଦାଦାଶ୍ରୀ :** ହଁ, କିନ୍ତୁ ତୁମେ ଠିକ୍ ଥିବ ତେବେ ନା ? ତୁମେ ଠିକ୍ ଅଟ କି ? ତୁମେ ନିଜକୁ ଠିକ୍ ବୋଲି ଜାଣିଛ ?

**ପ୍ରଶ୍ନକର୍ତ୍ତା :** ଆମକୁ ଆମ ଆତ୍ମା କୁହେ ଯେ ଆମେ ଠିକ୍ ଅଛୁ ।

**ଦାଦାଶ୍ରୀ :** ଏ ତ ତୁମେ ହିଁ ଜଜ୍, ତୁମେ ହିଁ ଓକିଲ ଆଉ ତୁମେ ହିଁ ଅଭିଯୁକ୍ତ, ତେବେ ପୁଣି ତୁମେ ଠିକ୍ ହିଁ ହେଲ ନା ? ତୁମେ ପୁଣି ନିଜର ଭୁଲ ଦେଖିବ ହିଁ ନାହିଁ ନା ? ସାମ୍ନାବ୍ୟକ୍ତିକୁ ମଧ୍ୟ ଏପରି ହିଁ ଲାଗେ ଯେ ମୁଁ ହିଁ ଠିକ୍ ଅଟେ । ତୁମେ ବୁଝିପାରୁଛ ?

## ଏସବୁ ଅଟେ ଦୁର୍ବଳତା

**ପ୍ରଶ୍ନକର୍ତ୍ତା :** କିନ୍ତୁ ମୋତେ ଏହା ପଚାରିବାର ଥିଲା ଯେ ଅନ୍ୟାୟ ଉପରେ ଚିଡ଼ିବା ତ ଠିକ୍ ନା ? କୌଣସି କ୍ଷେତ୍ରରେ ଆମେ ଖୋଲାଖୋଲି ଅନ୍ୟାୟ ହେଉଥିବାର ଦେଖୁ, ସେତେବେଳେ ଯେଉଁ ପ୍ରକୋପ ହୁଏ, ତାହା କ'ଣ ଯୋଗ୍ୟ ?

**ଦାଦାଶ୍ରୀ :** ଏପରି ଅଟେ ଯେ ଏ କ୍ରୋଧ, ଚିଡ଼ିବା ଇତ୍ୟାଦି ସବୁ ଦୁର୍ବଳତା ଅଟେ, କେବଳ ୱିକନେସ୍ । ପୂରା ଜଗତ ପାଖରେ ଏ ଦୁର୍ବଳତା ଅଛି ।

କେହି ତୋତେ ଗାଳି ଦିଏ, ତେବେ ତୁ ଉଗ୍ର ହୋଇଯାଉ ନା ?

**ପ୍ରଶ୍ନକର୍ତ୍ତା :** ହଁ, ହୋଇଯାଏ ।

**ଦାଦାଶ୍ରୀ :** ତେବେ ତାହା ଦୁର୍ବଳତା କୁହାଯିବ ନା ସବଳତା କୁହାଯିବ ?

**ପ୍ରଶ୍ନକର୍ତ୍ତା :** କିଛି ଜାଗାରେ ତ କ୍ରୋଧ ହେବା ହିଁ ଉଚିତ୍ ।

**ଦାଦାଶ୍ରୀ :** ନା, ନା । କ୍ରୋଧ ତ ନିଜେ ଏକ ଦୁର୍ବଳତା ଅଟେ । 'କିଛି ଜାଗାରେ କ୍ରୋଧ ହେବା ଉଚିତ, ତାହା ତ ସଂସାରୀ କଥା ଅଟେ । ଏମାନେ ତ' ନିଜ ଦ୍ୱାରା କ୍ରୋଧ ପରିତ୍ୟାଗ କରିପାରନ୍ତି ନାହିଁ, ଏଥିପାଇଁ ଏପରି କୁହନ୍ତି ଯେ କ୍ରୋଧ ହେବା ହିଁ ଉଚିତ୍ !

## ମନ ମଧ୍ୟ ନ ବିଗିଡ଼େ, ସେ ବଳବାନ

**ପ୍ରଶ୍ନକର୍ତ୍ତା :** ତେବେ ପୁଣି କେହି ମୋର ଅପମାନ କରିବ ଆଉ ମୁଁ ଶାନ୍ତିର ସହ ବସିରହିବି ତେବେ ତାହା ନିର୍ବଳତା କୁହାଯିବନି ?

**ଦାଦାଶ୍ରୀ :** ନା । ଓହୋହୋ ! ଅପମାନ ସହିବା ତାହା ତ' ବହୁତ ବଡ଼ ବଳ କୁହାଯାଏ ! ଏବେ ମୋତେ କେହି ଗାଳି ଦେବ ତେବେ ମୋତେ କିଛି ବି ହେବ ନାହିଁ, ତା' ପ୍ରତି ମନ ବି ବିଗିଡ଼ିବ ନାହିଁ, ଏହା ବଳ ଅଟେ ! ଆଉ ନିର୍ବଳତା ତ' ଏ ସମସ୍ତେ କିଚ୍-କିଚ୍ କରୁଥାନ୍ତି ନା, ଜୀବମାତ୍ର ପରସ୍ପର ଲଢ଼ିବାରେ ହିଁ ଲାଗିଥାନ୍ତି । ସେ ସବୁ ନିର୍ବଳତା କୁହାଯାଏ । ଅର୍ଥାତ ଶାନ୍ତିର ସହ ଅପମାନ ସହିବା, ତାହା ବହୁତ ବଡ଼ ବଳ କୁହାଯାଏ ଆଉ ଏପରି ଅପମାନ ଥରେ ମାତ୍ର ଲଂଘିଯିବା, ଗୋଟିଏ ଷ୍ଟେପ୍ ଲଂଘିଯିବା, ତେବେ ଶହେ ଷ୍ଟେପ ଲଂଘିବାର ଶକ୍ତି ଆସିଯିବ । ଆପଣଙ୍କୁ ବୁଝାପଡ଼ିଲା ନା ? ସାମ୍ନାବ୍ୟକ୍ତି ଯଦି ବଳବାନ ହୋଇଥିବ, ତେବେ ଜୀବମାତ୍ର ତା ସମ୍ମୁଖରେ ନିର୍ବଳ ହୋଇଯାନ୍ତି । ତାହା ତ' ତା'ର ସ୍ୱଭାବିକ ଗୁଣ ଅଟେ । କିନ୍ତୁ ଯଦି ନିର୍ବଳ ବ୍ୟକ୍ତି ଆପଣଙ୍କୁ ହଇରାଣ କରେ ଆଉ ତେବେ ମଧ୍ୟ ଆପଣ ତା'ର କିଛି ବିଗାଡ଼ନ୍ତି ନାହିଁ, ତେବେ ତାହା ବହୁତ ବଡ଼ ବଳ କୁହାଯିବ ।

ବାସ୍ତବରେ ତ ନିର୍ବଳର ରକ୍ଷଣ କରିବା ଉଚିତ ଏବଂ ବଳବାନର ସାମ୍ନା କରିବା ଉଚିତ୍ । କିନ୍ତୁ ଏହି କଳିଯୁଗରେ ଏପରି ଲୋକ ଆଉ ନାହାନ୍ତି ନା ! ଏବେ ତ ନିର୍ବଳକୁ ହିଁ ମାରୁଛନ୍ତି ଆଉ ବଳବାନଠାରୁ ଖସି ପଳାଉଛନ୍ତି । ବହୁତ କମ୍ ଲୋକ ଅଛନ୍ତି ଯେଉଁମାନେ ନିର୍ବଳର ରକ୍ଷା କରନ୍ତି ଏବଂ ବଳବାନର ସାମ୍ନା କରନ୍ତି । ଯଦି ଏପରି ଲୋକ ଥିବେ, ତେବେ ତାହା ତ' କ୍ଷତ୍ରିୟଗୁଣ କୁହାଯିବ । ନଚେତ୍

ପୁରା ଜଗତ ଦୁର୍ବଳମାନଙ୍କୁ ହିଁ ମାରିଥାଏ । ଘରକୁ ଯାଇ ସ୍ୱାମୀ ନିଜ ସ୍ତ୍ରୀ ଉପରେ ଶୁରବୀରତା ଦେଖାଏ । ଖୁଣ୍ଟରେ ବନ୍ଧା ହୋଇଥିବା ଗାଇକୁ ମାରିବା ତେବେ ସେ କେଉଁଆଡ଼େ ଯିବ ? ଆଉ ଖୋଲିବା ପରେ ମାରିବା ତେବେ ? ଦୌଡ଼ି ପଳାଇବ ନଚେତ୍ ସାମ୍ନା କରିବ ।

ନିଜର ଶକ୍ତି ଥିବା ସତ୍ତ୍ୱେ ମଣିଷ ସାମ୍ନାବାଲାର ଅନିଷ୍ଟ ନକରେ, ନିଜର ଶତ୍ରୁକୁ ମଧ୍ୟ ଦୁଃଖୀ ନକରେ, ତାହା ବହୁତ ବଡ଼ ବଳ କୁହାଯାଏ । ଏବେ କେହି ତୁମ ଉପରେ କ୍ରୋଧ କରେ ଆଉ ତୁମେ ମଧ୍ୟ ତା' ଉପରେ କ୍ରୋଧିତ ହୋଇଯାଅ ତେବେ ତାହା ଦୁର୍ବଳତା କୁହାଯିବନି ? ଅର୍ଥାତ ମୁଁ କ'ଣ କହିବାକୁ ଚାହୁଁଛି କି ଏ କ୍ରୋଧ-ମାନ-ମାୟା-ଲୋଭ, ଏସବୁ ନିର୍ବଳତା ଅଟେ । ଯିଏ ବଳବାନ, ତା'କୁ କ୍ରୋଧ କରିବାର ଆବଶ୍ୟକତା କେଉଁଠି ରହିଲା ? କିନ୍ତୁ ଏମାନେ ତ, କ୍ରୋଧର ଯେତିକି ତାପ ଥାଏ, ସେହି ତାପ ଦ୍ୱାରା ସାମ୍ନାବାଲାକୁ ବଶୀଭୂତ କରିବା ପାଇଁ ଯାଆନ୍ତି । କିନ୍ତୁ ଯାହାର କ୍ରୋଧ ନାହିଁ, ତା' ପାଖରେ କିଛି ତ ନିଶ୍ଚିତ ଥିବ ନା ? ତା'ର 'ଶୀଳ୍' ନାମକ ଯେଉଁ ଚାରିତ୍ର ଥାଏ ତାହା ଦ୍ୱାରା ପଶୁମାନେ ମଧ୍ୟ ବଶୀଭୂତ ହୋଇଯାନ୍ତି । ବାଘ, ସିଂହ, ଶତ୍ରୁ ଇତ୍ୟାଦି, ପୂରା ସେନା ସମସ୍ତେ ବଶୀଭୂତ ହୋଇଯାନ୍ତି !

## କ୍ରୋଧୀ, ସେ ଅବଳା ଅଟେ !

**ପ୍ରଶ୍ନକର୍ତ୍ତା :** କିନ୍ତୁ ଦାଦା, କେବେ କେହି ବ୍ୟକ୍ତି ଆମ ସାମ୍ନାରେ ଗରମ ଦେଖାଏ, ତେବେ କ'ଣ କରିବା ଉଚିତ୍ ?

**ଦାଦାଶ୍ରୀ :** ଗରମ ତ ହୋଇଯିବେ ନା ! ଏହା କ'ଣ ତାଙ୍କ ହାତର କଥା ? ଭିତରର ମଶୀନାରୀ ଆମ ହାତରେ ନାହିଁ ନା ! ଏଠି ତ ଯେନ ତେନ ପ୍ରକାରେ ଏ ମଶୀନାରୀ ଚାଲୁଅଛି । ଯଦି ନିଜ ହାତରେ ଥାଆନ୍ତା ତେବେ କେହି ମଶୀନାରୀ ଗରମ ହେବାକୁ ହିଁ ଦେଇନଥାନ୍ତେ ନା ! ସାମାନ୍ୟ ମଧ୍ୟ ଗରମ ହୋଇଯିବା ଅର୍ଥାତ ଗଧ ପାଲଟିଯିବା । ମଣିଷତ୍ୱ ଥାଉ ଥାଉ ଗଧ ହୋଇଗଲୁ ! ଏପରି କେହି କରିବେ ହିଁ ନାହିଁ ନା ! କିନ୍ତୁ ଯାହା ନିଜ ହାତରେ ନାହିଁ, ସେଠି ପୁଣି କ'ଣ କରିହେବ ?

ଏପରି ଅଟେ,ଏହି ଜଗତରେ କେବେ ମଧ୍ୟ ଗରମ ହେବାର କୌଣସି କାରଣ ନଥାଏ । କେହି କୁହେ ଯେ, 'ଏ ପିଲା କଥା ମାନୁନାହିଁ' ତଥାପି ତାହା ଗରମ ହେବାର କାରଣ ନୁହେଁ । ସେଠାରେ ତୋତେ ଥଣ୍ଡାର ସହିତ କାମ ନେବାକୁ ହେବ । ଏ ତ' ତୁ ନିର୍ବଳ ଅଟୁ ଏଥିପାଇଁ ଗରମ ହୋଇଯାଉଛୁ । ଆଉ ଗରମ ହୋଇଯିବା, ଭୟଙ୍କର ନିର୍ବଳତା କୁହାଯାଏ । ଏଣୁ ଯେତେବେଳେ ବହୁତ ଅଧିକ ନିର୍ବଳତା ଥିବ, ସେତେବେଳେ ଗରମ ହେବ ନା ! ଏଣୁ ଯିଏ ଗରମ ହୁଏ ତା' ଉପରେ ତ ଦୟା ରଖିବା ଉଚିତ ଯେ ଏହି ବିଚରାର ନିଜ ଉପରେ ତିଳେମାତ୍ର ମଧ୍ୟ କଣ୍ଟ୍ରୋଲ୍ ନାହିଁ । ଯାହାର ନିଜର ସ୍ୱଭାବ ହିଁ ତା' କଣ୍ଟ୍ରୋଲ୍‌ରେ ନାହିଁ, ତା' ଉପରେ ଦୟା ରଖିବା ଉଚିତ୍ ।

ଗରମ ହେବା ମାନେ କ'ଣ ? ଯେ ପ୍ରଥମେ ନିଜେ ଜଳିବା ଆଉ ତା'ପରେ ସାମ୍ନାବାଲାକୁ ଜାଳିଦେବା । ଏ ଦିଆସିଲି ଲଗାଇବା ମାନେ ନିଜେ ହୁ ହୁ ହୋଇ ଜଳିବା ଏବଂ ପୁଣି ସାମ୍ନାବାଲାକୁ ଜାଳିଦେବା । ଅର୍ଥାତ ଗରମ ହେବା ଯଦି ନିଜ ହାତରେ ଥାଆନ୍ତା ତେବେ କେହି ଗରମ ହୋଇନଥାନ୍ତେ ନା ! ଜଳିବା କାହାକୁ ପସନ୍ଦ ? ଯଦି କେହି ଏପରି କୁହେ ଯେ, 'କେବେ କେବେ ସଂସାରରେ କ୍ରୋଧ କରିବା ପାଇଁ ଆବଶ୍ୟକ ପଡ଼େ ।' ତେବେ ମୁଁ କହିବି ଯେ, 'ନା, ଏପରି କିଛି କାରଣ ନାହିଁ ଯେଉଁଥି ପାଇଁ କ୍ରୋଧ କରିବା ଦରକାର ପଡ଼େ ।' କ୍ରୋଧ ତ' ନିର୍ବଳତା ଅଟେ, ଏଥିପାଇଁ ତାହା ହୋଇଯାଏ । ଭଗବାନ ଏଥିପାଇଁ ଅବଳା କହିଛନ୍ତି । ପୁରୁଷ କାହାକୁ କୁହନ୍ତି ? ଯାହାଠାରେ କ୍ରୋଧ-ମାନ-ମାୟା-ଲୋଭର ନିର୍ବଳତା ନଥିବ, ତା'କୁ ଭଗବାନ ପୁରୁଷ କହିଛନ୍ତି । ଅର୍ଥାତ୍ ଏ ଯେଉଁ ପୁରୁଷ ରୂପୀ ଦେଖା ଯାଉଛନ୍ତି ସେମାନଙ୍କୁ ମଧ୍ୟ ଅବଳା କହିଛନ୍ତି, କିନ୍ତୁ ଏମାନଙ୍କୁ ଲାଜ ଲାଗୁନାହିଁ ନା, ସେତିକି ଭଲ କଥା ! ନଚେତ୍ ଅବଳା କହିଲେ ତ ଲାଜେଇ ଯିବେ ନା ? କିନ୍ତୁ ଏମାନଙ୍କୁ କିଛି ହୋସ ହିଁ ନାହିଁ । କେତେ ହୋସ ଅଛି ? ଗାଧୋଇବା ପାଇଁ ପାଣି ଦେବ ତେବେ ଗାଧୋଇ ପଡ଼େ । ଖାଇବା, ଗାଧୋଇବା, ଶୋଇବା ଇତ୍ୟାଦି ସବୁର ହୋସ ଅଛି, କିନ୍ତୁ ଆଉ କିଛି ହୋସ ନାହିଁ, ମଣିଷପଣିଆର ଯାହା ବିଶେଷ ହୋସ କୁହାଯାଏ ଯେ ଏ ସଜ୍ଜନ ପୁରୁଷ ଅଟନ୍ତି, ଏପରି ସଜ୍ଜନତା ଲୋକଙ୍କୁ ଦେଖାଯାଉ, ତାହାର ହୋସ ନାହିଁ ।

କ୍ରୋଧ-ମାନ-ମାୟା-ଲୋଭ ତ ଖୋଲା ଦୁର୍ବଳତା ଅଟେ ଆଉ ବହୁତ କ୍ରୋଧ ଆସିଯାଏ ତେବେ ଏ ହାତ-ଗୋଡ଼ ଥରିବାର ଦେଖିନାହଁ ତୁମେ ?

**ପ୍ରଶ୍ନକର୍ତ୍ତା :** ଶରୀର ମଧ୍ୟ ମନାକରେ ଯେ 'ତୋର କ୍ରୋଧ କରିବା ଠିକ୍ ନୁହେଁ ।'

**ଦାଦାଶ୍ରୀ :** ହଁ, ଶରୀର ମଧ୍ୟ ମନାକରେ ଯେ ଏହା ଆମକୁ ଶୋଭା ଦେଉନାହିଁ । ଅର୍ଥାତ ଏ କ୍ରୋଧ ତ କେତେ ବଡ଼ ଦୁର୍ବଳତା ଅଟେ ! ଆମଠାରେ କ୍ରୋଧ ନରହିବା ଉଚିତ୍ ।

## ପର୍ସନାଲିଟୀର ପ୍ରଭାବ ପଡ଼େ, ବିନା କମଜୋରୀବାଲାର

**ପ୍ରଶ୍ନକର୍ତ୍ତା :** କେହି ବ୍ୟକ୍ତି ଛୋଟ ପିଲାଟିକୁ ବହୁତ ମାରୁଥିବ ଆଉ ସେହି ସମୟରେ ଆମେ ସେ ରାସ୍ତାଦେଇ ଯାଉଥିବୁ, ସେତେବେଳେ ସେ ବ୍ୟକ୍ତିକୁ ଅଟକାଇଲୁ ଆଉ ଯଦି ନ ମାନେ ତେବେ ଶେଷରେ ଗାଳିକରି କ୍ରୋଧର ସହ ତା'କୁ ସେପଟକୁ ଠେଲିଦେବା ଉଚିତ ନା ନୁହଁ ?

**ଦାଦାଶ୍ରୀ :** କ୍ରୋଧ କରିବ, ତେବେ ମଧ୍ୟ ସେ ନମାରି ରହିବ ନାହିଁ । ଆରେ, ତୁମକୁ ମଧ୍ୟ ମାରିବ ନା ! ଯାହା ବି ହେଉ ତା'ଉପରେ କ'ଣ ପାଇଁ କ୍ରୋଧ କରୁଛ ? ତା'କୁ ଆରାମରେ କୁହ, ବ୍ୟବହାରିକ ରୂପେ କଥାବାର୍ତ୍ତା କର । ନହେଲେ, ସାମ୍ନାରେ କ୍ରୋଧ କରିବ ତେବେ ତାହା ୱିକନେସ୍ ଅଟେ !

**ପ୍ରଶ୍ନକର୍ତ୍ତା :** ତେବେ ସେ ପିଲାଟିକୁ ମାଡ଼ ଖାଇବାକୁ ଛାଡ଼ିଦେବୁ ?

**ଦାଦାଶ୍ରୀ :** ନା, ସେଠାରେ ଆପଣଙ୍କୁ ଯାଇ କହିବା ଉଚିତ ଯେ, 'ଭାଇ, ତୁମେ ଏପରି କ'ଣ ପାଇଁ କରୁଛ ? ଏହି ପିଲାଟି ତୁମର କ'ଣ ବିଗାଡ଼ିଛି ?' ତା'କୁ ଏହିପରି ବୁଝାଇ କଥା ହେବା ଉଚିତ୍ । ତୁମେ ତା' ଉପରେ କ୍ରୋଧ କରିବ, ତେବେ ତ ସେହି କ୍ରୋଧ ତୁମର ଦୁର୍ବଳତା ଅଟେ । ପ୍ରଥମ କଥା ତ ନିଜ ଭିତରେ ଦୁର୍ବଳତା ନଥିବା ଦରକାର । ଯାହାଠାରେ ଦୁର୍ବଳତା ନଥାଏ ତା'ର ପ୍ରଭାବ ପଡ଼େ ନା ! ସେମାନେ ଯଦି ଏମିତି ହିଁ, ସାଧାରଣ ରୂପରେ କିଛି କହିବେ, ତେବେ ମଧ୍ୟ ସମସ୍ତେ ମାନିଯିବେ ।

**ପ୍ରଶ୍ନକର୍ତ୍ତା :** କଦାଚିତ ନମାନିପାରନ୍ତି ।

**ଦାଦାଶ୍ରୀ :** ନମାନିବାର କ'ଣ କାରଣ ? ତୁମ ପର୍ସନାଲିଟୀର ପ୍ରଭାବ ପଡ଼େ ନାହିଁ । ଅର୍ଥାତ ଦୁର୍ବଳତା ନଥିବା ଦରକାର, ଚାରିତ୍ରବାନ ହେବା ଉଚିତ । 'ମ୍ୟାନ ଅଫ ପର୍ସନାଲିଟୀ' ହେବା ଦରକାର । ଲକ୍ଷେ ଗୁଣ୍ଡା ତା'କୁ ଦେଖି ଦେଖି ଦୌଡ଼ି ଚାଲିଯିବେ ! ଚିଡ଼ଚିଡ଼ା ମଣିଷକୁ କେହି ଡରନ୍ତି ନାହିଁ, ଓଲଟା ମାରିବେ ! ସଂସାର ତ ଦୁର୍ବଳକୁ ହିଁ ମାରେ ନା !

ଅର୍ଥାତ 'ମ୍ୟାନ ଅଫ ପର୍ସନାଲିଟୀ' ହେବା ଦରକାର । ପର୍ସନାଲିଟୀ କେବେ ଆସେ ? ବିଜ୍ଞାନ ଜାଣିବା ପରେ ପର୍ସନାଲିଟୀ ଆସେ । ଏହି ଜଗତରେ ଯାହାକୁ ଭୁଲିଯାଆନ୍ତି, ତାହା ରିଲେଟିବ ଜ୍ଞାନ ଅଟେ ଏବଂ ଯାହାକୁ କେବେ ମଧ୍ୟ ଭୁଲା ଯାଇନପାରେ, ତାହା ବିଜ୍ଞାନ ଅଟେ !

## ଗରମ ଠାରୁ ମଧ୍ୟ ମାରାତ୍ମକ ବରଫ !

ବରଫ ପଡ଼େ, ତାହା ତୁ ଜାଣିଛୁ ? ବରଫ ଅର୍ଥାତ ବହୁତ ଥଣ୍ଡା ହୁଏ ନା ? ସେହି ବରଫ ଦ୍ୱାରା ଗଛ ସବୁ ଜଳିଯାଆନ୍ତି, ସବୁ କପାସ, ଘାସ, ସବୁକିଛି ଜଳିଯାଏ । ତୁ ଜାଣିଛୁ ? ସେମାନେ ଥଣ୍ଡାରେ କାହିଁକି ଜଳି ଯାଉଥିବେ ?

**ପ୍ରଶ୍ନକର୍ତ୍ତା :** ଅତ୍ୟଧିକ ଥଣ୍ଡା କାରଣରୁ ।

**ଦାଦାଶ୍ରୀ :** ହଁ, ଅର୍ଥାତ ଯଦି ତୁ ଥଣ୍ଡା(ଶାନ୍ତ) ହୋଇ ରହିବୁ ତେବେ ସେହିପରି '*ଶୀଳ*' ଉତ୍ପନ୍ନ ହୋଇଯିବ ।

## ଯେଉଁଠି କ୍ରୋଧ ବନ୍ଦ, ସେଠି ପ୍ରତାପ

**ପ୍ରଶ୍ନକର୍ତ୍ତା :** କିନ୍ତୁ ଦାଦା, ଆବଶ୍ୟକତା ଠାରୁ ଅଧିକ ଥଣ୍ଡା ହେବା ମଧ୍ୟ ଏକ ପ୍ରକାରର ଦୁର୍ବଳତା ଅଟେ ନା ?

**ଦାଦାଶ୍ରୀ :** ଆବଶ୍ୟକତା ଠାରୁ ଅଧିକ ଥଣ୍ଡା ହେବାର ଆବଶ୍ୟକ ହିଁ ନାହିଁ । ଆପଣଙ୍କୁ ତ ଲିମିଟରେ ରହିବାର ଅଛି, ତାହାକୁ 'ନର୍ମାଲିଟୀ' କୁହନ୍ତି ।

ବିଲୋ ନର୍ମାଲ ଇଜ୍ ଦ ଫିବର, ଏବଭ ନର୍ମାଲ ଇଜ୍ ଦ ଫିବର, ୯୮ ଇଜ୍ ଦ ନର୍ମାଲ । ଏଣୁ ଆମକୁ ନର୍ମାଲିଟୀ ହିଁ ଦରକାର ।

କ୍ରୋଧୀ ଅପେକ୍ଷା କ୍ରୋଧ ନକରିବା ବାଲାକୁ ଲୋକେ ଅଧିକ ଡରନ୍ତି । କ'ଣ କାରଣ ହୋଇଥିବ ଏହାର ? କ୍ରୋଧ ବନ୍ଦ ହେବା ପରେ ପ୍ରତାପ ଉତ୍ପନ୍ନ ହୁଏ । ଏପରି ପ୍ରକୃତିର ନିୟମ ଅଟେ ! ନହେଲେ ତା'ର ରକ୍ଷଣ କରିବା ବାଲା ମିଳିବେନି ନା ! କ୍ରୋଧ ତ' ରକ୍ଷଣ ଥିଲା, ଅଜ୍ଞାନତାରେ କ୍ରୋଧ ଦ୍ୱାରା ରକ୍ଷଣ ହେଉଥିଲା ।

## ଚିଡ଼ଚିଡ଼ାର ନମ୍ବର ଶେଷରେ

**ପ୍ରଶ୍ନକର୍ତ୍ତା :** ସାତ୍ତ୍ୱିକ ଚିଡ଼ ଅବା ସାତ୍ତ୍ୱିକ କ୍ରୋଧ, ଭଲ ନା ନୁହେଁ ?

**ଦାଦାଶ୍ରୀ :** ତାଙ୍କୁ ଲୋକେ କ'ଣ କୁହନ୍ତି ? ଏ ଛୋଟ ପିଲାମାନେ ମଧ୍ୟ ତାଙ୍କୁ କୁହନ୍ତି ଯେ, 'ଏ ତ' ଚିଡ଼ଚିଡ଼ା ହିଁ ଅଟନ୍ତି !' ଚିଡ଼ ତ ମୂର୍ଖତା ଅଟେ, ଫୁଲିଶନେସ ଅଟେ । ଚିଡ଼ କୁ ଦୁର୍ବଳତା କୁହାଯାଏ । ପିଲାଙ୍କୁ ଯଦି ଆମେ ପଚାରିବା ଯେ, ତୋ ବାପା କିପରି ଲୋକ ? ତେବେ ସେମାନେ ମଧ୍ୟ କହିବେ ଯେ, 'ସେ ତ ବହୁତ ଚିଡ଼ଚିଡ଼ା ଅଟନ୍ତି !' । କୁହ ଏବେ ଇଜ୍ଜତ ବଢ଼ିଲା ନା କମିଲା ? ଏହି ୱିକ୍‌ନେସ ନରହିବା ଉଚିତ । ଅର୍ଥାତ ଯେଉଁଠି ସାତ୍ତ୍ୱିକତା ଥିବ, ସେଠାରେ ୱିକ୍‌ନେସ ନଥିବ ।

ଘରେ ଛୋଟ ପିଲାଙ୍କୁ ଯଦି ପଚାରିବା ଯେ, 'ତୋ ଘରେ ପ୍ରଥମ ନମ୍ବର କାହାର ?' ତେବେ ସେ ଦେଖିନିଏ ଯେ ମୋ ଜେଜେମା ଚିଡ଼ୁ ନାହିଁ, ଏଥିପାଇଁ ସବୁଠୁ ଭଲ ସେ ଅଟନ୍ତି । ପ୍ରଥମ ନମ୍ବର ତାଙ୍କର । ପୁଣି ଦ୍ୱିତୀୟ, ତୃତୀୟ, ଏପରି କରି-କରି ବାପାଙ୍କ ନମ୍ବର ଶେଷରେ ଆସେ !! କେଉଁଥିପାଇଁ ? କାରଣ ସେ ଚିଡ଼ଚିଡ଼ା ଅଟନ୍ତି, ଏଥିପାଇଁ । ମୁଁ କୁହେ ଯେ, 'ବାପା ଟଙ୍କା ରୋଜଗାର କରି ତୁମ ପାଇଁ ଖର୍ଚ୍ଚ କରୁଛନ୍ତି ତଥାପି ତାଙ୍କର ଶେଷ ନମ୍ବର ?' ତେବେ କୁହନ୍ତି, 'ହଁ' । ଏବେ କୁହ, ମେହନତ-ମଜୁରି କରୁଛ, ଖାଇବାକୁ ଦେଉଛ, ଟଙ୍କା ଆଣିକି ଦେଉଛ, ତଥାପି ଶେଷ ନମ୍ବର ଆପଣଙ୍କର ହିଁ ଆସିଲା ?

## କ୍ରୋଧ ଅର୍ଥାତ୍ ଦୃଷ୍ଟିହୀନତା !

**ପ୍ରଶ୍ନକର୍ତ୍ତା :** ସାମାନ୍ୟ ରୂପେ ମନୁଷ୍ୟକୁ କ୍ରୋଧ ଆସିବାର ମୁଖ୍ୟ କାରଣ କ'ଣ ହୋଇପାରେ ?

**ଦାଦାଶ୍ରୀ :** ଦେଖାଯିବା ବନ୍ଦ ହୋଇଯାଏ, ଏଥିପାଇଁ! ମନୁଷ୍ୟ କାନ୍ଥ ସହ କେତେବେଳେ ଧକ୍କା ହୁଏ ? ଯେତେବେଳେ ତା'କୁ କାନ୍ଥ ଦେଖାଯାଏ ନାହିଁ, ସେତେବେଳେ ଧକ୍କା ହୋଇଯାଏ ନା ? ସେହିପରି ଯେତେବେଳେ ଭିତରେ ଦେଖାଯିବା ବନ୍ଦ ହୋଇଯାଏ, ସେତେବେଳେ ମଣିଷ ଦ୍ୱାରା କ୍ରୋଧ ହୋଇଯାଏ । ଆଗକୁ କିଛି ରାସ୍ତା ମିଳେନାହିଁ, ଏଥିପାଇଁ କ୍ରୋଧ ହୋଇଯାଏ ।

## ସୁଝ୍ ନପଡ଼େ, ସେତେବେଳେ କ୍ରୋଧ

କ୍ରୋଧ କେତେବେଳେ ଆସେ ? ତେବେ କହିବା, ଯେତେବେଳେ ଦର୍ଶନ ଅଟକିଯାଏ, ସେତେବେଳେ ଜ୍ଞାନ ଅଟକେ । ସେତେବେଳେ କ୍ରୋଧ ଉତ୍ପନ୍ନ ହୁଏ । ମାନ ମଧ୍ୟ ଏହିପରି ଅଟେ । ଦର୍ଶନ ଅଟକିଯାଏ, ସେତେବେଳେ ଜ୍ଞାନ ଅଟକେ, ସେତେବେଳେ ମାନ ସୃଷ୍ଟି ହୋଇଯାଏ ।

**ପ୍ରଶ୍ନକର୍ତ୍ତା :** ଉଦାହରଣ ଦେଇ ବୁଝାନ୍ତୁ ତେବେ ଅଧିକ ସରଳ ଲାଗିବ ।

**ଦାଦାଶ୍ରୀ :** ଲୋକମାନେ କୁହନ୍ତିନି କି, 'କ'ଣ ପାଇଁ ଏତେ ରାଗିଗଲେ ?' ସେତେବେଳେ ଆମେ କହୁ, 'ମୋତେ କିଛି ସୁଝ୍ ପଡୁନାହିଁ(ବୁଝାପଡୁନାହିଁ), ଏଥିପାଇଁ ରାଗିଗଲି ।' ହଁ, କିଛି ବୁଝାପଡ଼େ ନାହିଁ, ସେତେବେଳେ ମଣିଷ ରାଗିଯାଏ । ଯାହାର ବୁଝିବା ଶକ୍ତି ଥାଏ, କ'ଣ ସେ କ୍ରୋଧ କରିବ ? କ୍ରୋଧ କରିଲ, ତେବେ ସେ କ୍ରୋଧ ପ୍ରଥମ ପୁରସ୍କାର କାହାକୁ ଦିଏ ? ଯେଉଁଠୁ ସୃଷ୍ଟି ହୋଇଥାଏ, ତା'କୁ । ପ୍ରଥମେ ନିଜକୁ ଜଳାଏ, ପୁଣି ଅନ୍ୟମାନଙ୍କୁ ଜଳାଏ ।

## କ୍ରୋଧାଗ୍ନି ଜଳାଏ ସ୍ୱ-ପର କୁ

କ୍ରୋଧ ଅର୍ଥାତ ନିଜେ ନିଜ ଘରେ ଦିଆସିଲି ଲଗେଇବା । ନିଜ ଘରେ ଶୁଖିଲା ଘାସ ଭର୍ତ୍ତିକରି ସେଥିରେ ଦିଆସିଲି ଲଗେଇ ଦେବା, ତାହା କ୍ରୋଧ ଅଟେ ।

ଅର୍ଥାତ ପ୍ରଥମେ ନିଜେ ଜଳେ ଆଉ ପୁଣି ପଡ଼ୋଶୀକୁ ଜଳାଏ ।

କାହା ଜମିରେ ବଡ଼ ବଡ଼ ପାଳଗଦା ତିଆରି ହୋଇଥିବ, କିନ୍ତୁ ଗୋଟିଏ ହିଁ ଦିଆସିଲି ପକେଇ ଦେଲେ କ'ଣ ହେବ ?

**ପ୍ରଶ୍ନକର୍ତ୍ତା :** ଜଳିଯିବ ।

**ଦାଦାଶ୍ରୀ :** ସେହିପରି ଥରେ କ୍ରୋଧ କରିବା ଦ୍ୱାରା, ଦୁଇ ବର୍ଷରେ ଯେଉଁ ଆୟ କରିଥିବ, ତାହା ମାଟିରେ ମିଶିଯାଏ । କ୍ରୋଧ ଅର୍ଥାତ ଜ୍ୱଳନ୍ତ ନିଆଁ । ତା'କୁ ନିଜକୁ ଜଣାପଡ଼େ ନାହିଁ ଯେ ମୁଁ ମାଟିରେ ମିଶେଇ ଦେଲି । କାରଣ ବାହାରର ଜିନିଷରେ କିଛି ଅଭାବ ଆସେ ନାହିଁ, କିନ୍ତୁ ଭିତରେ ସବୁ ସରିଯାଏ । ପରଜନ୍ମ ପାଇଁ ଯାହା ସବୁ ଜମା ହୋଇଥାଏ ନା, ସେଥିରୁ କିଛି ଖର୍ଚ୍ଚ ହୋଇଯାଏ । ଆଉ ଯଦି ଅଧିକ ଖର୍ଚ୍ଚ ହୋଇଯିବ ତେବେ କ'ଣ ହେବ ? ଏଠି ମଣିଷ ଥିଲା, ତେଣୁ ରୁଟି ଖାଉଥିଲା, ପୁଣି ସେଠି ଚାରା(ଘାସ) ଖାଇବା ପାଇଁ (ପଶୁ ଗତିରେ) ଯିବାକୁ ପଡ଼ିବ । ରୁଟିକୁ ଛାଡ଼ି ଏପରି ଚାରା ଖାଇବା ପାଇଁ ଯିବାକୁ ପଡ଼ିବ । ତାହା କ'ଣ ଭଲ ହେବ ?

ୱାର୍ଲ୍ଡରେ(ବିଶ୍ୱ) କେହି ବି ମନୁଷ୍ୟ କ୍ରୋଧକୁ ଜିତି ପାରିବେନି । କ୍ରୋଧର ଦୁଇଟି ରୂପ ଅଛି, ଗୋଟିଏ *କଢ଼ାପା* (କଳହ) ଏବଂ ଅନ୍ୟଟି *ଅଜଂପା* (ବ୍ୟତିବ୍ୟସ୍ତ,ବିବ୍ରତ) । ଯେଉଁମାନେ କ୍ରୋଧକୁ ଜିତନ୍ତି, ସେମାନେ *କଢ଼ାପା*କୁ ଜିତନ୍ତି । ଏଥିରେ ଏପରି ହୁଏ ଯେ ଗୋଟିଏକୁ ଦବାଇବା ପାଇଁ ଯିବା ତେବେ ଅନ୍ୟଟି ବଢ଼ିଯାଏ ଆଉ କୁହେ ଯେ 'ମୁଁ କ୍ରୋଧକୁ ଜିତିଗଲି', ତେବେ ପୁଣି ମାନ ବଢ଼ିବ । ବାସ୍ତବରେ କ୍ରୋଧକୁ ପୂର୍ଣ୍ଣରୂପରେ ଜିତିନାହିଁ । ଦୃଶ୍ୟ(ଯାହା ଦେଖାଯାଏ) କ୍ରୋଧକୁ ଜିତି ନେଇଛି ଏପରି କୁହାଯିବ ।

## ଟଂଟ୍, ତାହା କ୍ରୋଧ

କ୍ରୋଧରେ *ଟଂଟ୍* ଥିବ, ତେବେ ଯାଇ ତାହାକୁ କ୍ରୋଧ କୁହାଯାଏ । ଉଦାହରଣ ସ୍ୱରୂପ, ସ୍ୱାମୀ-ସ୍ତ୍ରୀ ରାତିରେ ବହୁତ ଝଗଡ଼ା ଲାଗିଲେ । କ୍ରୋଧ ପୁରା ଉଛୁଳିଗଲା, ରାତିସାରା ଦୁହେଁ ଚେଇଁକରି ପଡ଼ିରହିଲେ । ସକାଳେ ସ୍ତ୍ରୀ ଚା' କପ୍‌ଟି

ଧଡ଼କରି ରଖିବ, ତେବେ ସ୍ୱାମୀ ବୁଝିଯିବ ଯେ ଏବେ ଟଂଡ଼୍ ଅଛି ! ଏହା ହିଁ କ୍ରୋଧ । ପୁଣି ଭଲା ସେ ଟଂଡ଼୍ ଯେତେ ସମୟ ପାଇଁ ହେଉ ! ଆରେ, କିଛି ଲୋକଙ୍କୁ ତ ଜୀବନସାରା ରୁହେ ! ବାପା ପୁଅର ମୁହଁ ଦେଖେନାହିଁ ଆଉ ପୁଅ ବାପାର ମୁହଁ ଦେଖେନାହିଁ । କ୍ରୋଧର ଟଂଡ଼୍ ତ' ବିଗିଡ଼ି ଯାଇଥିବା ଚେହେରାରୁ ହିଁ ଜଣା ପଡ଼ିଯାଏ ।

ଟଂଡ଼୍ ଏକ ଏପରି ଜିନିଷ ଅଟେ ଯେ ଯଦି କେହି ପନ୍ଦର ବର୍ଷ ପୂର୍ବେ ତୁମର ଅପମାନ କରିଥିବ ଆଉ ସେହି ବ୍ୟକ୍ତି ପନ୍ଦର ବର୍ଷ ପର୍ଯ୍ୟନ୍ତ ତୁମକୁ ଭେଟି ନଥିବ, କିନ୍ତୁ ଆଜି ଭେଟ ହୋଇଯାଏ, ତେବେ ଭେଟ ହେବା କ୍ଷଣି ତୁମକୁ ସବୁ ମନେ ପଡ଼ିଯାଏ । ତାହା ଟଂଡ଼୍ ଅଟେ । ବାକି, ଟଂଡ଼୍ ତ' କାହାର ମଧ୍ୟ ଯାଏ ନାହିଁ । ବଡ଼ ବଡ଼ ସାଧୁ ମହାରାଜ ମଧ୍ୟ ଟଂଡ଼୍‌ବାଲା ଥାଆନ୍ତି । ରାତିରେ ଯଦି ତୁମେ କିଛି ଥଟ୍ଟା-ପରିହାସ କରିଦେଇଥିବ, ତେବେ ପନ୍ଦର-ପନ୍ଦର ଦିନ ଯାଏଁ ତୁମ ସହ କଥା ହେବେନି, ତାହା ଟଂଡ଼୍!

## ଅନ୍ତର, କ୍ରୋଧ ଏବଂ ରାଗିବା ମଧ୍ୟରେ

**ପ୍ରଶ୍ନକର୍ତ୍ତା :** ଦାଦାଜୀ, ରାଗିବା ଏବଂ କ୍ରୋଧ କରିବା ମଧ୍ୟରେ କ'ଣ ଅନ୍ତର ଅଛି ?

**ଦାଦାଶ୍ରୀ :** କ୍ରୋଧ ତା'କୁ କହିବା, ଯାହା ଅହଂକାର ସହିତ ଥିବ । ରାଗ ଏବଂ ଅହଂକାର ଦୁହେଁ ଏକ ସଙ୍ଗରେ ଥିବେ, ତେବେ କ୍ରୋଧ କୁହାଯାଏ ଆଉ ବାପ ପୁଅ ଉପରେ ରାଗେ ତେବେ, ତାହା କ୍ରୋଧ କୁହାଯାଏ ନାହିଁ । ସେ କ୍ରୋଧରେ ଅହଂକାର ନଥାଏ, ଏଥିପାଇଁ ତାହାକୁ ରାଗ(ରାଗିବା) କୁହାଯାଏ । ଏଥିପାଇଁ ଭଗବାନ କହିଛନ୍ତି ଯେ,'ଇଏ ରାଗୁଛି ତଥାପି ତା'ର ପୁଣ୍ୟ ଜମା କର ।' ସେତେବେଳେ ପଚାରିଲୁ, 'ଇଏ ରାଗୁଛି, ତଥାପି ?' ତେବେ କହିଲେ, 'କ୍ରୋଧ କଲେ ପାପ ହୁଏ, ରାଗିବାରେ ପାପ ନାହିଁ ।' କ୍ରୋଧରେ ଅହଂକାରର ମିଶ୍ରଣ ଥାଏ ଆଉ ଯେବେ ତୁମକୁ ରାଗ ଆସେ, ସେତେବେଳେ ଭିତରେ ଖରାପ ଲାଗେ ନା ?

କ୍ରୋଧ-ମାନ-ମାୟା-ଲୋଭ ଦୁଇ ପ୍ରକାରର ହୋଇଥାନ୍ତି ।

ଏକ ପ୍ରକାରର କ୍ରୋଧ ତାହା ଯେ ଯାହା ମୋଡ଼ା ଯାଇପାରେ- ନିବାର୍ଯ୍ୟ । କାହା ଉପରେ କ୍ରୋଧ ଆସିଯାଏ ତେବେ ତାହାକୁ ଭିତରେ ଭିତରେ ହିଁ ମୋଡ଼ା ଯାଇପାରେ ଏବଂ ତାହାକୁ ଶାନ୍ତ କରାଯାଇପାରେ, ଏପରି, ମୋଡ଼ା ଯାଇପାରେ ସେଭଳି କ୍ରୋଧ । ଏହି ଷ୍ଟେଜ୍ ପର୍ଯ୍ୟନ୍ତ ପହଞ୍ଚିଯିବ ତେବେ ବ୍ୟବହାର ବହୁତ ସୁନ୍ଦର ହୋଇଯିବ !

ଦ୍ୱିତୀୟ ପ୍ରକାରର କ୍ରୋଧ ତାହା, ଯେ ଯାହା ମୋଡ଼ା ଯାଇ ନପାରେ- ଅନିବାର୍ଯ୍ୟ । ବହୁତ ଚେଷ୍ଟା କଲାପରେ ମଧ୍ୟ ବିସ୍ଫୋଟ ନହୋଇ ରୁହେ ହିଁ ନାହିଁ ! ତାହା ମୋଡ଼ାଯାଇ ନପାରେ ସେପରି, ଅନିବାର୍ଯ୍ୟ କ୍ରୋଧ । ଏପରି କ୍ରୋଧ ନିଜର ଅହିତ କରେ ଏବଂ ସାମ୍ନାବାଲାର ମଧ୍ୟ ଅହିତ କରିଥାଏ ।

ଭଗବାନ, ସାଧୁ ଏବଂ ଚାରିତ୍ରବାଲା ମାନଙ୍କ ପାଇଁ କେଉଁ ପର୍ଯ୍ୟନ୍ତ କ୍ରୋଧକୁ ଚଳାଇ ନେଇଛନ୍ତି ? ଯେ ପର୍ଯ୍ୟନ୍ତ ସାମ୍ନାବାଲା ମଣିଷକୁ ଦୁଃଖ ଦାୟୀ ନହେବ, ସେତିକି କ୍ରୋଧକୁ ଭଗବାନ ଚଳାଇ ନେଇଛନ୍ତି । ମୋ କ୍ରୋଧ କେବଳ ମୋତେ ହିଁ ଦୁଃଖ ଦିଏ, କିନ୍ତୁ ଅନ୍ୟ କାହାକୁ ଦୁଃଖଦାୟୀ ନ ହୁଏ, ସେତିକି କ୍ରୋଧ ଚଳାଇ ନେଇଛନ୍ତି ।

## ଜାଣିବାବାଲାକୁ ଚିହ୍ନ

**ପ୍ରଶ୍ନକର୍ତ୍ତା :** ଆମେ ସମସ୍ତେ ଜାଣିଛୁ ଯେ ଏ କ୍ରୋଧ ଆସିଲା, ଏହା ଭୁଲ୍ ଅଟେ । ତଥାପି...

**ଦାଦାଶ୍ରୀ :** ଏପରି ଅଟେ ଯେ, ଯିଏ କ୍ରୋଧୀ ଅଟେ ସେ ଜାଣିନାହିଁ, ଲୋଭି ଅଟେ ସେ ଜାଣି ନାହିଁ, ଯିଏ ମାନୀ ଅଟେ ସେ ମଧ୍ୟ ଜାଣିନାହିଁ, ଜାଣିବାବାଲା ଅଲଗା ହିଁ ଅଟେ । ଏବଂ ଏ ସବୁ ଲୋକମାନଙ୍କୁ ମନରେ ଏପରି ହୁଏ ଯେ 'ମୁଁ ଜାଣିଛି' ତଥାପି କ'ଣ ପାଇଁ କ୍ରୋଧ ହୋଇଯାଉଛି ? ଏବେ 'ଜାଣିଛି' କହିବା ବାଲା କିଏ ? ଏହାର ଖବର ନାହିଁ । 'କିଏ ଜାଣିଛି' ଏହାର ଖବର ନାହିଁ । ବାସ୍ ଏତିକି ହିଁ ଖୋଜିବାର ଅଛି । ଜାଣିବାବାଲାକୁ ଖୋଜି ବାହାର କରିନେବା, ତେବେ ଏ ସବୁ ଚାଲିଯିବେ, ଏପରି ଅଟେ । ଜାଣି ହିଁ ନାହାନ୍ତି, ଜାଣିଛନ୍ତି ବୋଲି

ସେତେବେଳେ କୁହାଯିବ ଯେତେବେଳେ ଏସବୁ ଦୁର୍ବଳତା ଚାଲିଯିବେ, ରହିବେ ହିଁ ନାହିଁ ।

## ସମ୍ୟକ ଉପାୟ, ଜାଣ ଥରେ ମାତ୍ର

**ପ୍ରଶ୍ନକର୍ତ୍ତା :** ଏପରି ଜାଣିବା ପରେ ମଧ୍ୟ କ୍ରୋଧ ହୋଇଯାଏ । ତାହାର କ'ଣ ନିବାରଣ ଅଛି ?

**ଦାଦାଶ୍ରୀ :** କିଏ ଜାଣିଛି ? ଜାଣିବା ପରେ କ୍ରୋଧ ହେବ ହିଁ ନାହିଁ । କ୍ରୋଧ ହୋଇଯାଉଛି ଏହାର ଅର୍ଥ ଜାଣି ହିଁ ନାହିଁ, କେବଳ ଅହଂକାର କରୁଛ ଯେ 'ମୁଁ ଜାଣିଛି' ।

**ପ୍ରଶ୍ନକର୍ତ୍ତା :** କ୍ରୋଧ ହୋଇସାରିବା ପରେ ମନେ ପଡ଼େ ଯେ ମୋତେ କ୍ରୋଧ ନକରିବା ଉଚିତ ।

**ଦାଦାଶ୍ରୀ :** ନା, କିନ୍ତୁ ଜାଣିବା ପରେ କ୍ରୋଧ ହେବନାହିଁ । ମୁଁ ଏଠାରେ ଦୁଇଟି ବୋତଲ ରଖିଥିବି, ଆଉ ବୁଝାଇ ଦେଇଥିବି ଯେ ଏହା ଔଷଧ ଅଟେ ଆଉ ଏହା ପଏଜନ(ବିଷ) ଅଟେ । ଦୁଇଟିଯାକ ଏକାଭଳି ଦେଖାଯାଉଛି କିନ୍ତୁ ସେଥିରେ ଭୁଲଭାଲ୍ ନହେବ ତେବେ କହିପାରିବା ଯେ 'ଏ ଜାଣିଛି', କିନ୍ତୁ ଭୁଲଭାଲ ହୋଇଯାଏ, ତେବେ ଏ କଥା ନିଶ୍ଚିତ ହୋଇଗଲା ଯେ ସେ ଜାଣି ହିଁ ନଥିଲା । ସେହିପରି ଯେବେ କ୍ରୋଧ ହୋଇଯାଏ, ସେତେବେଳେ କିଛି ମଧ୍ୟ ଜାଣନାହିଁ କିନ୍ତୁ ଜାଣିବାର ଅହଂକାର କରୁଥାଅ । ଆଲୁଅରେ ଝୁଣ୍ଟୁଛ କି ? ଅର୍ଥାତ ଯେବେ ପର୍ଯ୍ୟନ୍ତ ଝୁଣ୍ଟୁଛ, ସେତେବେଳ ଯାଏଁ କିଛି ଜାଣି ହିଁ ନାହଁ । ଏମାନେ ତ ଅନ୍ଧାରକୁ ହିଁ ଆଲୁଅ କହୁଛନ୍ତି, ତାହା ନିଜର ଭୁଲ ଅଟେ । ଏଥିପାଇଁ ସତ୍‌ସଙ୍ଗ ରେ ବସି ଥରେ 'ଜାଣିନିଅ', ପରେ କ୍ରୋଧ-ମାନ-ମାୟା-ଲୋଭ ସବୁକିଛି ଚାଲିଯିବ ।

**ପ୍ରଶ୍ନକର୍ତ୍ତା :** କ୍ରୋଧ ତ ସମସ୍ତଙ୍କର ହୋଇଯାଏ ନା !

**ଦାଦାଶ୍ରୀ :** କିନ୍ତୁ ଏ ଭାଇଙ୍କୁ ପଚାର, ସେ ତ ମନା କରୁଛନ୍ତି ।

**ପ୍ରଶ୍ନକର୍ତ୍ତା :** ସତ୍‌ସଙ୍ଗରେ ଆସିବା ପରେ ପୁଣି କ୍ରୋଧ ଆସେ ନାହିଁ ନା !

**ଦାଦାଶ୍ରୀ :** ଏପରି ? ସେ କେଉଁ ଔଷଧ ନେଇଥିବେ ? ଦ୍ୱେଷର ମୂଳ ଚାଲିଯାଏ, ଏପରି ଔଷଧ ନେଇଛନ୍ତି ।

## ସମଝଦାରୀ ସହ

**ପ୍ରଶ୍ନକର୍ତ୍ତା :** ମୋର କେହି ନିକଟ ସମ୍ପର୍କୀୟ ହୋଇଥିବେ, ତାଙ୍କ ଉପରେ ମୁଁ କ୍ରୋଧୀତ ହୋଇଯାଏ । ସେ ତାଙ୍କ ଦୃଷ୍ଟିରେ କଦାଚିତ ଠିକ୍ ମଧ୍ୟ ହୋଇପାରନ୍ତି, କିନ୍ତୁ ମୁଁ ନିଜ ଦୃଷ୍ଟିରେ କ୍ରୋଧୀତ ହୋଇଯାଏ, ତ' କେଉଁ କାରଣରୁ କ୍ରୋଧୀତ ହୋଇଯାଉଛି ?

**ଦାଦାଶ୍ରୀ :** ତୁମେ ରାସ୍ତାରେ ଆସୁଛ ଆଉ ଏ ଘର ଉପରୁ ଏକ ପଥର ମୁଣ୍ଡ ଉପରେ ଆସି ପଡ଼ିଲା ଏବଂ ରକ୍ତ ବାହାରିଲା, ତେବେ ସେତେବେଳେ ବହୁତ କ୍ରୋଧ କରିବ ?

**ପ୍ରଶ୍ନକର୍ତ୍ତା :** ନା, ତାହା ତ' ଘଟିଗଲା ।

**ଦାଦାଶ୍ରୀ :** ନା, କିନ୍ତୁ ସେଠାରେ କ୍ରୋଧ କ'ଣ ପାଇଁ କରୁନାହଁ ? ଯଦି ନିଜେ କାହାକୁ ଦେଖିନାହଁ, ତେବେ କ୍ରୋଧ କିପରି ହେବ ?

**ପ୍ରଶ୍ନକର୍ତ୍ତା :** କେହି ଜାଣିଶୁଣି ମାରିନଥିଲା ।

**ଦାଦାଶ୍ରୀ :** ଆଉ ଏବେ ବାହାରକୁ ଯିବା ଆଉ କେଉଁ ପିଲା ଯଦି ପଥର ମାରିଦିଏ, ତାହା ଆମ ଦେହରେ ବାଜେ ଏବଂ ରକ୍ତ ବାହାରେ, ତେବେ ତା' ଉପରେ କ୍ରୋଧ କରନ୍ତି, ତାହା କ'ଣ ପାଇଁ ? 'ସେ ମୋତେ ପଥର ମାରିଲା, ଆଉ ରକ୍ତ ବାହାରିଲା' ଏଥିପାଇଁ କ୍ରୋଧ କରନ୍ତି ଯେ 'ତୁ କ'ଣ ପାଇଁ ମାରିଲୁ ?' ଆଉ ଯେବେ ପାହାଡ଼ ଉପରୁ ଗଡ଼ିଗଡ଼ି ପଥର ଆସି ବାଜେ ଏବଂ ମୁଣ୍ଡରୁ ରକ୍ତ ବାହାରେ, ତେବେ ଦେଖୁଥାଏ କିନ୍ତୁ କ୍ରୋଧ କରେ ନାହିଁ !

ସେମାନଙ୍କ ମନରେ ଏପରି ଲାଗେ ଯେ 'ଏହି ପିଲା କରୁଛି' । କେହି ବ୍ୟକ୍ତି ଜାଣିଶୁଣି ମାରି ହିଁ ପାରିବନି । ଅର୍ଥାତ ପାହାଡ଼ ଉପରୁ ପଥର ଗଡ଼ିଆସିବା ଏବଂ କେହି ପଥର ମାରିବା, ଦୁହେଁ ଏକାଭଳି ହିଁ ଅଟନ୍ତି । କିନ୍ତୁ ଭ୍ରାନ୍ତିରେ ଏପରି

ଦେଖାଯାଏ ଯେ 'ଏ ସବୁ କରୁଛି' । ଏହି ୱର୍ଲ୍ଡରେ କୌଣସି ମଣିଷକୁ ଝାଡ଼ା ଫେରିବା ପାଇଁ ମଧ୍ୟ ଶକ୍ତି ନାହିଁ ।

ଯଦି ଆମକୁ ଜଣାପଡ଼େ ଯେ କେହି ଜାଣିଶୁଣି ମାରିନାହିଁ, ତେବେ ସେଠାରେ କ୍ରୋଧ କରେ ନାହିଁ । ପୁଣି କହୁଛି, 'ମୋତେ କ୍ରୋଧ ଆସି ଯାଉଛି । ମୋ ସ୍ୱଭାବ କ୍ରୋଧୀ ଅଟେ ।' ମୂର୍ଖ, ସ୍ୱଭାବରୁ କ୍ରୋଧ ଆସେ ନାହିଁ । ସେଠି ପୁଲିସବାଲା ସାମ୍ନାରେ କ'ଣ ପାଇଁ ଆସୁନାହିଁ ? ପୁଲିସବାଲା ଗାଳିକରେ, ସେ ସମୟରେ କ୍ରୋଧ କ'ଣ ପାଇଁ ଅସେ ନାହିଁ ? ଏମାନଙ୍କୁ ପତ୍ନୀ ଉପରେ ରାଗ ଆସେ, ପିଲାମାନଙ୍କ ଉପରେ କ୍ରୋଧ ଆସେ, ପଡ଼ୋଶୀ ଉପରେ, 'ଅଣ୍ଡରହ୍ୟାଣ୍ଡ' (ଆପଣଙ୍କ ତଳେ କାମ କରୁଥିବା ବ୍ୟକ୍ତି) ଉପରେ କ୍ରୋଧ ଆସେ କିନ୍ତୁ, 'ବୋସ' ଉପରେ କାହିଁକି ଆସେ ନାହିଁ ? ଏମିତି ହିଁ ସ୍ୱଭାବତ ମଣିଷକୁ କ୍ରୋଧ ଆସିପାରିବ ନାହିଁ । ଏ ତ' ଏମାନଙ୍କୁ ନିଜର ମନମାନୀ କରିବାର ଥାଏ ।

**ପ୍ରଶ୍ନକର୍ତ୍ତା :** କିପରି କଣ୍ଟ୍ରୋଲ କରିବୁ ?

**ଦାଦାଶ୍ରୀ :** ବୁଝିବାକୁ ପଡ଼ିବ । ଏ ଯିଏ ସାମ୍ନାକୁ ଆସେ, ସେ ତ ନିମିତ୍ତ ଅଟେ ଏବଂ ତୁମର ହିଁ କର୍ମର ଫଳ ଦିଏ । ସେ ନିମିତ୍ତ ହୋଇସାରିଛି । ଏବେ ଏପରି ବୁଝାପଡ଼େ, ତେବେ କ୍ରୋଧ କଣ୍ଟ୍ରୋଲରେ ଆସିଯିବ । ଯେତେବେଳେ ଏହା ଦେଖୁଛ ଯେ ପଥର ପାହାଡ଼ ଉପରୁ ପଡ଼ିଲା, ସେତେବେଳେ କ୍ରୋଧ କଣ୍ଟ୍ରୋଲରେ ଆସିଯାଏ । ତେବେ ଏଥିରେ ମଧ୍ୟ ବୁଝିନେବାର ଅଛି ଯେ ଭାଇ, ଏ ସମସ୍ତେ ପାହାଡ଼ ଭଳି ହିଁ ଅଟନ୍ତି ।

ରାସ୍ତାରେ କେଉଁ ଗାଡ଼ିବାଲା ଓଲଟା ରାସ୍ତାରେ ଆପଣଙ୍କ ସାମ୍ନାକୁ ଆସେ, ତେବେ ଲଢ଼ନାହିଁ ନା ? କ୍ରୋଧ କରନାହିଁ ନା ? କ'ଣ ? ଧକ୍କା ଦେଇ ଭାଙ୍ଗି ଦିଅ ତା'କୁ ? ଏପରି କର ? ନା । ତେବେ ସେଠାରେ କ'ଣ ପାଇଁ କରୁନାହଁ ? ସେଠି ବୁଝିଯାଅ ଯେ ମୁଁ ମରିଯିବି । ଆରେ ଭାଇ, ତା' ଠାରୁ ଅଧିକ ତ ଏଠି କ୍ରୋଧ କରିବା ଦ୍ୱାରା ମରିଯାଉଛ, କିନ୍ତୁ ଏହି ଚିତ୍ର ନଜରରେ ଆସେ ନାହିଁ ଆଉ ତାହା ଖୋଲାଖୋଲି ଦେଖାଯାଏ, ଏତିକି ହିଁ ଅନ୍ତର ଅଛି ! ସେଠି ରାସ୍ତାରେ ତା' ସହ ସାମ୍ନା କର ନାହିଁ ? କ୍ରୋଧ କର ନାହିଁ, ସାମ୍ନାବାଲାର ଭୁଲ ଥିବ ତଥାପି ?

**ପ୍ରଶ୍ନକର୍ତ୍ତା :** ନା ।

**ଦାଦାଶ୍ରୀ :** ସେହିପରି ଜୀବନରେ ମଧ୍ୟ ବୁଝିନେବା ଜରୁରୀ ଅଟେ ।

## ପରିଣାମ ତ', କଜେଜ(କାରଣ) ବଦଳିବା ଦ୍ୱାରା ହିଁ ବଦଳିବ

ଜଣେ ଭାଇ ମୋତେ କହିଲେ ଯେ, 'ଅନନ୍ତ ଜନ୍ମରୁ ଏହି କ୍ରୋଧକୁ ବାହାର କରୁଛି, ତଥାପି ଏ କ୍ରୋଧ କାହିଁକି ଯାଉନାହିଁ ? ତେବେ ମୁଁ କହିଲି ଯେ, 'ତୁମେ କ୍ରୋଧ ବାହାର କରିବାର ଉପାୟ ଜାଣିନାହଁ ।' ସେ କହିଲେ, 'କ୍ରୋଧ ବାହାର କରିବା ପାଇଁ ଶାସ୍ତ୍ରରେ ଯେଉଁ ଉପାୟ ଲେଖା ହୋଇଛି, ସେ ସବୁ କରୁଛି, ତଥାପି କ୍ରୋଧ ଯାଉନାହିଁ ।' ତେବେ ମୁଁ କହିଲି ଯେ, 'ସମ୍ୟକ ଉପାୟ ହୋଇଥିବା ଦରକାର' । ତେବେ ସେ କହିଲେ, 'ବହୁତ ସମ୍ୟକ ଉପାୟ ପଢ଼ିଛି, କିନ୍ତୁ ସେଥିରୁ କିଛି ମଧ୍ୟ କାମରେ ଆସିଲାନି ।' ପରେ ମୁଁ କହିଲି, 'କ୍ରୋଧ କୁ ବନ୍ଦ କରିବା ପାଇଁ ଉପାୟ ଖୋଜିବା ମୂର୍ଖତା ଅଟେ, କାହିଁକିନା କ୍ରୋଧ ତ ପରିଣାମ ଅଟେ । ଯେପରି ତୁମେ ପରୀକ୍ଷା ଦେଲ ଏବଂ ରେଜଲ୍ଟ ଆସିଲା, ଆଉ ମୁଁ ରେଜଲ୍ଟକୁ ନାଶ କରିବା ପାଇଁ ଉପାୟ ଖୋଜିବି, ସେହିପରି କଥା ହେଲା । ଏ ଯେଉଁ ରେଜଲ୍ଟ ଆସିଲା, ତାହା କାହାର ପରିଣାମ ? ଆମକୁ ସେହି ପରିଣାମ ବଦଳାଇବାର ଆବଶ୍ୟକତା ଅଛି ।'

ଲୋକମାନେ କ'ଣ କୁହନ୍ତି ଯେ, 'କ୍ରୋଧକୁ ଦବାଅ, କ୍ରୋଧକୁ ବାହାର କର ।' ଆରେ, ଏପରି କାହିଁକି କରୁଛ ? ବିନା କାରଣରେ ମୁଣ୍ଡ ଖରାପ କରୁଛ ! ଏହା ପରେ ମଧ୍ୟ କ୍ରୋଧ ତ ଯାଉ ହିଁ ନାହିଁ । ତଥାପି ଲୋକେ କହିବେ ଯେ, 'ନା ସାହେବ, ଅଳ୍ପ-ବହୁତ କ୍ରୋଧ ଦବି ଯାଇଛି ।' ଆରେ, ଯେ ପର୍ଯ୍ୟନ୍ତ ସେ ଭିତରେ ଅଛି ସେ ପର୍ଯ୍ୟନ୍ତ ତାହା ଦବିକରି ଅଛି ବୋଲି କହି ପାରିବାନି । ସେତେବେଳେ ସେ ଭାଇ କହିଲେ, 'ତେବେ ଆପଣଙ୍କ ପାଖରେ ଆଉ କିଛି ଉପାୟ ଅଛି ?' ମୁଁ କହିଲି, 'ହଁ, ଉପାୟ ଅଛି । ତୁମେ କରିବ ?' ସେ କହିଲେ, 'ହଁ ।' ମୁଁ କହିଲି, 'ଥରେ ନୋଟ ତ କର ଯେ ଏହି ଜଗତରେ ବିଶେଷତଃ କାହା ଉପରେ ଅଧିକ କ୍ରୋଧ ଆସୁଛି ?' ଯେଉଁଠି-ଯେଉଁଠି କ୍ରୋଧ ଆସୁଛି, ତାକୁ 'ନୋଟ' କରିନିଅ ଏବଂ ଯେଉଁଠି କ୍ରୋଧ ଆସୁନାହିଁ, ତାହା ମଧ୍ୟ ଜାଣି ନିଅ । ଥରେ ଲିଷ୍ଟ କରିନିଅ ଯେ ଏ ବ୍ୟକ୍ତି ଉପରେ କ୍ରୋଧ ଆସୁନାହିଁ । କିଛି ଲୋକ ଓଲଟା କରନ୍ତି, ତଥାପି

ତାଙ୍କ ଉପରେ କ୍ରୋଧ ଆସେନାହିଁ ଆଉ କିଛି ତ ବିଚରା ଠିକ୍ କରୁଥିବେ ତଥାପି ତାଙ୍କ ଉପରେ କ୍ରୋଧ ହୋଇଯାଏ, ତ ପୁଣି କିଛି କାରଣ ତ' ଥିବ ନା ?

**ପ୍ରଶ୍ନକର୍ତ୍ତା :** ତା' ପ୍ରତି ମନ ଭିତରେ ଗ୍ରନ୍ଥି ବନ୍ଧା ହୋଇଯାଇଥିବ ?

**ଦାଦାଶ୍ରୀ :** ହଁ, ଗ୍ରନ୍ଥି ବାନ୍ଧି ହୋଇଯାଇଛି, ସେ ଗ୍ରନ୍ଥିକୁ ନଷ୍ଟ କରିବା ପାଇଁ ଏବେ କ'ଣ କରିବା ? ପରୀକ୍ଷା ତ' ଦେଇ ସାରିଛ । ଯେତିକି ଥର ତା' ଉପରେ କ୍ରୋଧ ହେବାକୁ ଥିବ, ସେତିକି ଥର ହୋଇଯିବ ହିଁ । ଆଉ ସେଥିପାଇଁ ଗ୍ରନ୍ଥି ମଧ୍ୟ ବନ୍ଧା ହୋଇଯାଇଛି, କିନ୍ତୁ ଏହାପରେ ତୁମକୁ କ'ଣ କରିବା ଉଚିତ୍ ? ଯାହା ଉପରେ କ୍ରୋଧ ଆସୁଛି ତା' ପ୍ରତି ମନ ବିଗାଡ଼ିବାକୁ ନଦେବା ଉଚିତ୍ । ମନକୁ ସୁଧାରିବ ଯେ ଭାଇ, ଆମର ପ୍ରାରବ୍ଧର ହିସାବ ଅନୁସାରେ ଏ ବ୍ୟକ୍ତି ଏପରି କରୁଛି । ସେ ଯାହା-ଯାହା କରୁଛି, ତାହା ମୋ କର୍ମର ଉଦୟ ଅଟେ, ଏଥିପାଇଁ ଏପରି କରୁଛି । ଏହିପରି ମନକୁ ସୁଧାରିନେବ । ମନକୁ ସୁଧାରିଚାଲିଥିବ ଏବଂ ସାମନାବାଲା ପ୍ରତି ମନ ସୁଧୁରିଯିବ ତେବେ ତା'ପ୍ରତି କ୍ରୋଧ ଆସିବା ବନ୍ଦ ହୋଇଯିବ । କିଛି ସମୟ ପର୍ଯ୍ୟନ୍ତ, ଯାହା ବିଗତ(ପୂର୍ବ ଜନ୍ମର) ଇଫେକ୍ଟ ଥିବ, ପୂର୍ବର ଇଫେକ୍ଟ ଥିବ, ସେତିକି ଇଫେକ୍ଟ ଦେଇ ପୁଣି ବନ୍ଦ ହୋଇଯିବ ।

ଏହା ଅତ୍ୟନ୍ତ ସୂକ୍ଷ୍ମ କଥା ଅଟେ, ଏଥିପାଇଁ ଲୋକମାନେ ଜାଣି ପାରିଲେ ନାହିଁ । ପ୍ରତ୍ୟେକ ଜିନିଷର ଉପାୟ ତ ଥାଏ ନା ! ଜଗତ ବିନା ଉପାୟବାଲା ନୁହେଁ ! ଜଗତ ତ' ପରିଣାମକୁ ହିଁ ନାଶ କରିବା ପାଇଁ ଚାହୁଁଛି । ଅର୍ଥାତ କ୍ରୋଧ-ମାନ-ମାୟା-ଲୋଭ ପାଇଁ ଉପାୟ ଏହା ଅଟେ । ପରିଣାମକୁ କିଛି ମଧ୍ୟ କରନାହିଁ, ତା'ର କଜେଜ(କାରଣ)କୁ ନଷ୍ଟ କର ତେବେ ଏ ସମସ୍ତେ ଚାଲିଯିବେ । ଅର୍ଥାତ ସେ ନିଜେ ବିଚାରକ ହେବା ଉଚିତ୍ । ନଚେତ ଯଦି ଅଜାଗୃତ ହେବ ତେବେ କିଭଳି ଉପାୟ କରିବ ?

**ପ୍ରଶ୍ନକର୍ତ୍ତା :** କଜେଜ କିଭଳି ନଷ୍ଟ କରିବୁ, ତାହା ଟିକେ ଆଉଥରେ ବୁଝାନ୍ତୁ ନା !

**ଦାଦାଶ୍ରୀ :** ଏ ଭାଇ ଉପରେ ମୋତେ କ୍ରୋଧ ଆସୁଛି, ତେବେ ପୁଣି ମୁଁ ନିଶ୍ଚିତ କରିବି ଯେ ଏ ଭାଇ ଉପରେ ଯେଉଁ କ୍ରୋଧ ଆସୁଛି ତାହା, ମୁଁ ପୂର୍ବରୁ

ଯେଉଁ ସବୁ ତା'ର ଦୋଷ ଦେଖିଛି, ତାହାର ପରିଣାମ ଅଟେ । ଏବେ ଏ ଯାହା-ଯାହା ଦୋଷ କରୁଛି, ସେ ସବୁକୁ ଯଦି ମନ ଉପରେ ନନେବି, ତେବେ ପୁଣି ତା' ପ୍ରତି କ୍ରୋଧ ଧିରେ-ଧିରେ ବନ୍ଦ ହୋଇଯିବ । କିନ୍ତୁ କିଛି ପୂର୍ବ ପରିଣାମ ଅଛି, ସେତିକି ଆସିବ, ମାତ୍ର ଆଗକୁ ଆଉ ସବୁ ବନ୍ଦ ହୋଇଯିବ ।

**ପ୍ରଶ୍ନକର୍ତ୍ତା :** ଅନ୍ୟର ଦୋଷ ଦେଖାଯାଉଛି, କ'ଣ ସେହି କାରଣରୁ କ୍ରୋଧ ଆସେ ?

**ଦାଦାଶ୍ରୀ :** ହଁ । ସେ ଦୋଷ ଦେଖାଯାଏ, ତାହା ମଧ୍ୟ ଆମକୁ ଜାଣିନେବାକୁ ହେବ ଯେ ଏହା ମଧ୍ୟ ଭୁଲ ପରିଣାମ ଅଟେ । ଅର୍ଥାତ ଯେବେ ଏହି ଭୁଲ ପରିଣାମ ଗୁଡ଼ିକୁ ଦେଖିବା ବନ୍ଦ ହୋଇଯିବ, ତା'ପରେ କ୍ରୋଧ ବନ୍ଦ ହୋଇଯିବ । ଆମର ଦୋଷ ଦେଖିବା ବନ୍ଦ ହୋଇଗଲେ ସବୁକିଛି ବନ୍ଦ ହୋଇଯିବ ।

## କ୍ରୋଧର ମୂଳରେ ଅହଂକାର

ଲୋକେ ପଚାରନ୍ତି, " ଆମର ଏହି କ୍ରୋଧର କ'ଣ ଉପଚାର କରିବୁ ?" ମୁଁ କୁହେ, " ଏବେ ତୁମେ କ'ଣ କରୁଛ ?" ତେବେ କୁହନ୍ତି, " କ୍ରୋଧକୁ ଦବେଇ ଚାଲିଛୁ ।" ମୁଁ ପଚାରିଲି, 'ଚିହ୍ନିକି ଦବାଉଛ ନା ନଚିହ୍ନିକି ? କ୍ରୋଧକୁ ଚିହ୍ନିବାକୁ ତ ହେବ ନା ?' କ୍ରୋଧ ଏବଂ ଶାନ୍ତି ଦୁହେଁ ଏକା ସାଥିରେ ବସିଛନ୍ତି । ଏବେ ଆମେ କ୍ରୋଧକୁ ଚିହ୍ନିନାହାନ୍ତି ଆଉ ଶାନ୍ତିକୁ ଦବେଇଦେବା, ତେବେ ଶାନ୍ତି ମରିଯିବ ଓଲଟା ! ଏଣୁ ଏହା ଦବାଇବା ଭଳି ଜିନିଷ ନୁହେଁ । ତେବେ ସେ ବୁଝିପାରିଲା ଯେ କ୍ରୋଧ ଅହଂକାର ଅଟେ । ଏବେ, କିଭଳି ଅହଂକାରରୁ କ୍ରୋଧ ହୁଏ, ଏହାର ସନ୍ଧାନ କରିବା ଉଚିତ୍ ।

ପୁଅ ଗ୍ଲାସ୍ ଭାଙ୍ଗିଦେଲା ତ' କ୍ରୋଧ ଆସିଗଲା, ସେଠାରେ ଆମର କ'ଣ ଅହଂକାର ଅଛି ? ଏହି ଗ୍ଲାସ୍‌ର( ସେତିକି ଟଙ୍କା) କ୍ଷତି ହୋଇଯିବ, ଏପରି ଅହଂକାର ଅଛି । ଲାଭ-କ୍ଷତିର ଅହଂକାର ଅଛି ଆମର ! ଏଥିପାଇଁ ଲାଭ-କ୍ଷତିର ଅହଂକାରକୁ, ତା'ଉପରେ ବୁଝି-ବିଚାରି, ନିର୍ମୂଳ କର । ମିଥ୍ୟା ଅହଂକାରକୁ ସମ୍ଭାଳିକରି ରଖିବା ଦ୍ୱାରା କ୍ରୋଧ ହୋଇଚାଲିଥାଏ । କ୍ରୋଧ ଅଛି, ଲୋଭ ଅଛି, ବାସ୍ତବରେ ତ' ଏ ସମସ୍ତଙ୍କର ମୂଳରେ ଅହଂକାର ହିଁ ଅଛି ।

## କ୍ରୋଧର ଶମନ (ଶାନ୍ତ କରିବା), କେଉଁ ଦୃଷ୍ଟି ଦ୍ୱାରା ?

କ୍ରୋଧ ନିଜେ ହିଁ ଅହଂକାର ଅଟେ । ଏବେ ତାହାର ଜାଞ୍ଚ୍ କରିବା ଉଚିତ୍ । ଜାଞ୍ଚ୍ କର ଯେ, କିଭଳି ରୂପେ ତାହା ଅହଂକାର ଅଟେ । ତାହାର ଜାଞ୍ଚ୍ କରିବା, ତେବେ ବୁଝିହୁଏ ଯେ କ୍ରୋଧ ଅହଂକାର ଅଟେ । ଏ କ୍ରୋଧ କାହିଁକି ଉତ୍ପନ୍ନ ହେଲା ? ତେବେ କୁହନ୍ତି ଯେ, 'ଏ ଭଉଣୀ କପ୍-ପ୍ଲେଟ ଭାଙ୍ଗିଦେଲେ ଏଥିପାଇଁ କ୍ରୋଧ ଉତ୍ପନ୍ନ ହେଲା ।' ଏବେ କପ୍-ପ୍ଲେଟ ଭାଙ୍ଗି ପକେଇଲେ, ସେଥିରେ ଆମକୁ କ'ଣ ଆପତ୍ତି ? ତେବେ କୁହନ୍ତି ଯେ, 'ଆମ ଘରର କ୍ଷତି ହୋଇଗଲା ।' ଆଉ କ୍ଷତି ହୋଇଗଲା ତ' କ'ଣ ତାଙ୍କୁ ଗାଳି ଦେବା ? କିନ୍ତୁ ଅହଂକାର କରିବା, ଗାଳିଦେବା, ଇତ୍ୟାଦିକୁ ଯଦି ସୂକ୍ଷ୍ମତାର ସହ ବିଚାର କରାଯାଏ ତେବେ ଏପରି ଅଟେ ଯେ ବିଚାର କରିବା ଦ୍ୱାରା ହିଁ ସେ ସବୁ ଅହଂକାର ଧୋଇଯିବ । ଏବେ ଏହି କପ୍ ଭାଙ୍ଗିବା ତାହା ନିବାର୍ଯ୍ୟ ଅଟେ ନା ଅନିବାର୍ଯ୍ୟ ? ଅନିବାର୍ଯ୍ୟ ସଂଯୋଗ ଥାଏ କି ନଥାଏ ? ଚାକରକୁ ମାଲିକ ଗାଳିକରେ ଯେ, 'ଆରେ, କପ୍-ପ୍ଲେଟ କ'ଣ ପାଇଁ ଭାଙ୍ଗି ପକେଇଲୁ ? ତୋ ହାତ ଭାଙ୍ଗି ଯାଇଥିଲା କି ? ଆଉ ତୋର ଏମିତି ଥିଲା ସେମିତି ଥିଲା ।' ଯଦି ଅନିବାର୍ଯ୍ୟ ହୋଇଥିବ ତେବେ କ'ଣ ତା'କୁ ଗାଳିଦେଇ ପାରିବା ? ଜୋଇଁଙ୍କ ହାତରୁ କପ୍-ପ୍ଲେଟ ଭାଙ୍ଗିଯାଏ ତେବେ ସେଠି କିଛି ମଧ୍ୟ କୁହନ୍ତି ନାହିଁ । କାହିଁକିନା ସେ ସୁପିରିୟର୍ ଅଟନ୍ତି, ସେଠାରେ ଚୁପ୍ ! ଯଦି ଇନଫିରିୟର୍ ହୋଇଥିବ ତେବେ ଛିଟ୍ ଛିଟ୍ କରେ ! ଏ ସବୁ ଇଗୋଇଜମ ଅଟେ । ସୁପିରିୟର୍ ସାମନାରେ କ'ଣ ସମସ୍ତେ ଚୁପ୍ ହୋଇ ଯାଆନ୍ତିନି ? ଏ ଦାଦାଙ୍କ ହାତରୁ କିଛି ପଡ଼ି ଭାଙ୍ଗିଯାଏ ତେବେ କାହାରି ମନରେ କିଛି ଆସେ ହିଁ ନାହିଁ । ଆଉ ଚାକର ହାତରୁ ଭାଙ୍ଗିଯାଏ ତେବେ ?

ଏ ଜଗତ, ନ୍ୟାୟ କେବେ ଦେଖି ହିଁ ନାହିଁ । ଅବୁଝାମି ଯୋଗୁଁ ଏ ସବୁ ହେଉଛି । ଯଦି ବିଚାରବନ୍ତ ବୁଦ୍ଧି ହୋଇଥାନ୍ତା ନା, ତେବେ ମଧ୍ୟ ବହୁତ ବଡ଼ କଥା ! ବୁଦ୍ଧି ଯଦି ବିକଶିତ ହୋଇଥିବ, ବିଚାରଶକ୍ତି ସମ୍ପନ୍ନ ହୋଇଥିବ ତେବେ କେଉଁଠି ମଧ୍ୟ କୌଣସି ଝଗଡ଼ା ହେବ ହିଁ ନାହିଁ । ଏବେ ଝଗଡ଼ା କରିବା ଦ୍ୱାରା କ'ଣ କପ୍-ପ୍ଲେଟ ଜୋଡ଼ି ହୋଇଯାଏ ? କେବଳ ସନ୍ତୋଷ ମିଳେ, ସେତିକି ହିଁ ନା ? ଓଲଟା କଳହ ହୋଇଯାଏ, ତାହା ଅଲଗା । ମନରେ କ୍ଲେଶ ହେଇଯାଏ, ତାହା ଅଲଗା । ଅର୍ଥାତ ଏହି ବ୍ୟାପାରରେ ପ୍ରଥମେ ତ କପ୍ ଗଲା ସେ କ୍ଷତି,

ଦ୍ୱିତୀୟରେ, ଏ କ୍ଳେଶ ହେଲା, ସେ କ୍ଷତି ଆଉ ତୃତୀୟରେ ଚାକର ସାଙ୍ଗରେ ବୈର ବନ୍ଧାହେଲା, ସେ କ୍ଷତି ! ଚାକର ବୈର(ଶତୃତା) ବାନ୍ଧେ ଯେ 'ମୁଁ ଗରିବ ଅଟେ', ଏଥିପାଇଁ ଏ ମୋତେ ଏପରି କହୁଛି ନା ! କିନ୍ତୁ ସେ ବୈର ଛାଡ଼ିବ ନାହିଁ । ଆଉ ଭଗବାନ କହିଛନ୍ତି ଯେ କାହାରି ସହ ମଧ୍ୟ ବୈର ବାନ୍ଧିବନି । କଦାଚିତ ପ୍ରେମ ବାନ୍ଧିପାରୁଛ ତେବେ ବାନ୍ଧ, କିନ୍ତୁ ବୈର ବାନ୍ଧିବ ନାହିଁ । କାରଣ ପ୍ରେମ ବାନ୍ଧିବ ତେବେ ସେ ପ୍ରେମ ନିଜେ ନିଜେ ହିଁ ବୈରକୁ ଖୋଳି ଉପାଡ଼ିଦେବ । ପ୍ରେମ ତ' ଏପରି ଅଟେ ଯେ ବୈରୀର କବର ଖୋଳିପକାଏ । କିନ୍ତୁ ବୈରରୁ ତ' ବୈର ବଢ଼ିଚାଲେ । ଏହିପରି ନିରନ୍ତର ବଢ଼ିଚାଲେ । ବୈର କାରଣରୁ ହିଁ ତ ଏବେ ପର୍ଯ୍ୟନ୍ତ ଭଟକିବାକୁ ପଡୁଛି ! ଏ ମଣିଷ କ'ଣ ପାଇଁ ଭଟକୁଛନ୍ତି ? କ'ଣ ତୀର୍ଥଙ୍କର ମିଳିନଥିଲେ ? ତେବେ କୁହନ୍ତି, 'ନା, ତୀର୍ଥଙ୍କର ତ' ବହୁତ ଜଣ ମିଳିଥିଲେ । ତାଙ୍କର *ଦେଶନା*(ତୀର୍ଥଙ୍କରଙ୍କ ସନ୍ଦେଶ) ମଧ୍ୟ ଶୁଣିଥିଲି, କିନ୍ତୁ କିଛି ହେଲା ନାହିଁ ।'

କେଉଁ କଥାରେ ଅସୁବିଧା ଆସୁଛି ? କେଉଁଠି ଆପତ୍ତି ହେଉଛି ? ସେ ସବୁ ଆପତ୍ତିଗୁଡ଼ିକୁ ଦୂର କରିଦିଅ ନା ! ଯଦି ଆପତ୍ତି ହେଉଛି ତେବେ ତାହା ସଙ୍କୁଚିତ ଦୃଷ୍ଟି ଅଟେ । ଜ୍ଞାନୀପୁରୁଷ ଲଙ୍ଗ ସାଇଟ୍(ଦୂରଦୃଷ୍ଟି) ଦେଇ ଦିଅନ୍ତି । ସେ ଲଙ୍ଗସାଇଟ୍ ଆଧାରରେ ସବୁକିଛି 'ଯେମିତି କୁ ସେମିତି' ଦେଖାଯାଏ ।

## ପିଲାମାନଙ୍କ ଉପରେ ରାଗ ଆସେ ତେବେ...

**ପ୍ରଶ୍ନକର୍ତ୍ତା :** ଘରେ ପିଲାମାନଙ୍କ ଉପରେ କ୍ରୋଧ ଆସୁଛି, ତ' କ'ଣ କରିବି ?

**ଦାଦାଶ୍ରୀ :** ଅବୁଝାମି ଯୋଗୁଁ କ୍ରୋଧ ଆସୁଛି । ତା'କୁ ଯଦି ଆପଣ ପଚାରିବେ ଯେ, 'ତୋତେ କ'ଣ ବହୁତ ମଜା ଆସୁଥିଲା ? (ଯେତେବେଳେ ମୁଁ ରାଗିଥିଲି)' ତେବେ ସେ କହିବ ଯେ, 'ମୋତେ ଭିତରେ ବହୁତ ଖରାପ ଲାଗିଲା, ବହୁତ ଦୁଃଖ ଲାଗିଲା ।' ତା'କୁ ଦୁଃଖ ହେଉଛି, ଆପଣଙ୍କୁ ଦୁଃଖ ହେଉଛି ! ଏଥିରେ ପିଲା ଉପରେ ଚିଡ଼ିବାର ଆବଶ୍ୟକ ହିଁ କେଉଁଠି ରହିଲା ପୁଣି ? ଆଉ ଚିଡ଼ିବା ଦ୍ୱାରା ସେମାନେ ସୁଧୁରି ଯାଉଛନ୍ତି ତେବେ ଚିଡ଼ । ରେଜଲ୍ଟ ଭଲ ଆସୁଛି ତେବେ ସେ ଚିଡ଼ିବା କାମର ଅଟେ । ରେଜଲ୍ଟ ହିଁ ଭଲ ଆସୁନାହିଁ ତେବେ ଚିଡ଼ିବାର ଅର୍ଥ କ'ଣ ! କ୍ରୋଧ କରିବା ଦ୍ୱାରା ଲାଭ ହେଉଛି ତେବେ କର ଆଉ ଯଦି ଲାଭ ହେଉନାହିଁ

ତେବେ ଏମିତି ହିଁ ଚଳେଇ ନେ ନା !

**ପ୍ରଶ୍ନକର୍ତ୍ତା :** ଯଦି ଆମେ କ୍ରୋଧ ନ କରୁ ତେବେ ସେ ଶୁଣିବ ହିଁ ନାହିଁ, ଖାଇବ ନାହିଁ ମଧ୍ୟ ।

**ଦାଦାଶ୍ରୀ :** କ୍ରୋଧ କରିବା ପରେ ମଧ୍ୟ କେଉଁଠି ଶୁଣୁଛନ୍ତି ?!

## ବୀତରାଗଙ୍କ ସୂକ୍ଷ୍ମତା ତ' ଦେଖ

ତଥାପି ଲୋକେ କ'ଣ କୁହନ୍ତି ଯେ ଏ ବାପଜଣଙ୍କ ନିଜ ପୁଅ ଉପରେ ଏତେ ରାଗୁଛି, ଏଥିପାଇଁ ସେ ଅଯୋଗ୍ୟ ମଣିଷ ଅଟେ, ଆଉ ପ୍ରକୃତି ପାଖରେ ଏହାର କ'ଣ ନ୍ୟାୟ ହେଉଥିବ ? 'ଏ ବାପର ଭାଗରେ ପୁଣ୍ୟ ରଖ ।' ହଁ, ପୁଅର ହିତ ପାଇଁ ନିଜେ ନିଜ ଉପରେ କଳହ ନେଉଛି ନା ! ପୁଅର ସୁଖ ପାଇଁ ନିଜେ କଳହ ଆପଣେଇ ନେଲା, ଏଥିପାଇଁ ତା'କୁ ପୁଣ୍ୟ ଦିଅ ! ଅନ୍ୟଥା କୌଣସି ବି ପ୍ରକାରର କ୍ରୋଧ ପାପର ହିଁ ବନ୍ଧନ କରାଏ, କିନ୍ତୁ କେବଳ ଏହି ପୁଅର କିମ୍ବା ଶିଷ୍ୟର ସୁଖ ପାଇଁ ଯେଉଁ କ୍ରୋଧ କର, ସେଥିରେ ତୁମେ ନିଜର ଉତ୍ସର୍ଗ କରି ତା' ସୁଖ ପାଇଁ କର, ତେବେ ତା'ର ପୁଣ୍ୟ ବନ୍ଧାହୁଏ । ତଥାପି ଏଠାରେ ତ' ଲୋକେ ତା'କୁ ଅପଯଶ ହିଁ ଦିଅନ୍ତି ! ମାତ୍ର ଈଶ୍ୱରଙ୍କ ଘରେ ସଠିକ୍ କାନୁନ୍ ଅଛି ନା ନାହିଁ ? ନିଜ ପୁଅ ବା ଝିଅ ଉପରେ କ୍ରୋଧ କରେ ନା, କିନ୍ତୁ ସେଥିରେ ହିଂସକଭାବ ନଥାଏ, ଅନ୍ୟ ସବୁ ଜାଗାରେ ହିଂସକଭାବ ଥାଏ । ତଥାପି ସେଥିରେ ତଂତ୍ ରହିଥାଏ, କାହିଁକିନା ଯେମିତି ସେ ପୁଅକୁ ଦେଖେ, ସେତେବେଳେ ଭିତରେ ପୁଣି କ୍ଲେଶ ଆରମ୍ଭ ହୋଇଯାଏ । ତା'ର ସେ ତଂତ୍ ରହିଥାଏ ।

ଯଦି କ୍ରୋଧରେ ହିଂସକ-ଭାବ ଏବଂ ତଂତ୍, ଏ ଦୁହେଁ ନ ରୁହନ୍ତି ତେବେ ମୋକ୍ଷ ହୁଏ । ଆଉ ହିଂସକଭାବ ନଥାଏ, କେବଳ ତଂତ୍ ଥାଏ ତେବେ ମଧ୍ୟ ପୁଣ୍ୟ ବାନ୍ଧେ । କିଭଳି ସୂକ୍ଷ୍ମତାର ସହ ଭଗବାନ ଖୋଜି ବାହାର କରିଛନ୍ତି ନା !

## କ୍ରୋଧ କରେ ତଥାପି ବାନ୍ଧେ ପୁଣ୍ୟ

ଭଗବାନ କହିଛନ୍ତି ଯେ ଯଦି ଅନ୍ୟର ଭଲ ପାଇଁ କ୍ରୋଧ କରୁଛ, ପରମାର୍ଥ ହେତୁ କ୍ରୋଧ କରୁଛ ତେବେ ତାହାର ଫଳସ୍ୱରୂପ ପୁଣ୍ୟ ମିଳେ ।

ଏବେ ଏହି କ୍ରମିକ ମାର୍ଗରେ ତ' ଶିଷ୍ୟମାନେ ଭୟରେ ହିଁ ଥା'ନ୍ତି ଯେ 'ଏବେ କିଛି କହିବେ, ଏବେ କିଛି କହିବେ ।' ଆଉ ସେମାନେ(ଗୁରୁ) ମଧ୍ୟ ଦିନସାରା ସକାଳ ପହରୁ ଆକୁଳତାର ସହ ବସିରହିଥାନ୍ତି । ତ' ପୂରା ଦଶକ ଗୁଣକସ୍ଥାନ ପର୍ଯ୍ୟନ୍ତ ଏହି ହାଲ ! ସେ ଆଖି ଲାଲ କରନ୍ତି ତେବେ ଭିତରେ ନିଆଁ ଲାଗିଯାଏ ! ଏହି ବେଦନା, କେତେ ସବୁ ବେଦନା ହେଉଥିବ ? ସେତେବେଳେ କିପରି ପହଞ୍ଚିପାରିବା ? ଏଥିପାଇଁ ମୋକ୍ଷ ପାଇବା କ'ଣ ଏମିତି ହିଁ ଲଡ୍ଡୁ ଖାଇବାର ଖେଳ ଅଟେ ? ଏ ତ' କେବେ-କେବେ ହିଁ ଏପରି ଅକ୍ରମ ବିଜ୍ଞାନ ପ୍ରାପ୍ତ ହୁଏ !

## କ୍ରୋଧ ଅର୍ଥାତ ଏକ ପ୍ରକାରର ସଙ୍କେତ

ସଂସାରରେ ଲୋକେ କ'ଣ କୁହନ୍ତି ଯେ ଏ ଭାଇଜଣକ ପୁଅ ଉପରେ କ୍ରୋଧ କଲେ, ଏଥିପାଇଁ ସେ ଦୋଷୀ ଅଟନ୍ତି ଏବଂ ପାପ ବାନ୍ଧିଲେ । ଭଗବାନ ଏପରି କୁହନ୍ତି ନାହିଁ । ଭଗବାନ କୁହନ୍ତି ଯେ, 'ପୁଅ ଉପରେ କ୍ରୋଧ କଲା ନାହିଁ, ଏଥିପାଇଁ ତା' ବାପା ଦୋଷୀ ଅଟେ । ଏଣୁ ତା' ଉପରେ ଶହେ ଟଙ୍କା ଜୋରିମାନା ।' ସେତେବେଳେ ପଚାରନ୍ତି, 'କ୍ରୋଧ କରିବା ଉଚିତ ଅଟେ ?' ତେବେ ଭଗବାନ କୁହନ୍ତି, 'ନା, କିନ୍ତୁ ଏବେ ତାହାର ଆବଶ୍ୟକତା ଥିଲା । ଯଦି ଏଠାରେ କ୍ରୋଧ କରିନଥାନ୍ତ ତେବେ ପୁଅ ଓଲଟା ରାସ୍ତାରେ ଚାଲି ଯାଇଥାନ୍ତା ।'

ଅର୍ଥାତ କ୍ରୋଧ ଏକ ପ୍ରକାରର ଲାଲ ସଙ୍କେତ ଅଟେ, ଆଉ କିଛି ନୁହେଁ । ଯଦି ଆଖି ନଦେଖାଇଥାନ୍ତ, ଯଦି କ୍ରୋଧ କରିନଥାନ୍ତ, ତେବେ ପୁଅ ଓଲଟା ରାସ୍ତାରେ ଚାଲିଯାଇଥାନ୍ତା । ଏଥିପାଇଁ, ବାପା ଯଦି ପୁଅ ଉପରେ କ୍ରୋଧ କରେ, ତଥାପି ଭଗବାନ ତା'କୁ ଶହେ ଟଙ୍କା ପୁରଷ୍କାର ଦିଅନ୍ତି ।

କ୍ରୋଧ ତ' ଲାଲ ପତକା ଅଟେ । ପବ୍ଲିକ୍ କୁ ଏହା ଜଣାନାହିଁ ଆଉ କେତେ ସମୟ ଲାଲ ପତକା ଦେଖାଇବା ଉଚିତ, ଏହା ବୁଝିନେବା ଆବଶ୍ୟକ । ଏବେ ରେଳଗାଡ଼ି ଯାଉଥିବ ଆଉ ଅଢ଼େଇ ଘଣ୍ଟା ଯାଏଁ ଲାଲ ପତକା ଧରି ବିନା କାରଣରେ ଠିଆ ହେବା, ତେବେ କ'ଣ ହେବ ? ଅର୍ଥାତ ଲାଲ ସଙ୍କେତର ଆବଶ୍ୟକ ଅଛି, କିନ୍ତୁ କେତେ ସମୟ ପାଇଁ, ତାହା ବୁଝିନେବା ଉଚିତ ।

ଥଣ୍ଡା(ଶାନ୍ତ ରହିବା), ତାହା ସବୁଜ ସଙ୍କେତ ଅଟେ ।

## ରୌଦ୍ରଧ୍ୟାନ ପରିଣମିତ ଧର୍ମଧ୍ୟାନ ରେ

ପିଲାମାନଙ୍କ ଉପରେ କ୍ରୋଧ କଲ, କିନ୍ତୁ ଭିତରେ ତୁମର ଭାବ କ'ଣ ଥାଏ ଯେ 'ଏପରି ନହେବା ଉଚିତ ।' ଭିତରେ ତୁମର ଭାବ କ'ଣ ଥାଏ ?

**ପ୍ରଶ୍ନକର୍ତ୍ତା :** ଏପରି ନ ହେବା ଉଚିତ ।

**ଦାଦାଶ୍ରୀ :** ଅର୍ଥାତ୍ ଏହା ରୌଦ୍ରଧ୍ୟାନ ଥିଲା, ତାହା ଧର୍ମଧ୍ୟାନରେ ପରିଣତ ହୋଇଗଲା । କ୍ରୋଧ ହେଲା, ତଥାପି ପରିଣାମରେ ଆସିଲା ଧର୍ମଧ୍ୟାନ ।

**ପ୍ରଶ୍ନକର୍ତ୍ତା :** ଏପରି ନହେବା ଉଚିତ, ଏହି ଭାବ ଅଛି, ଏଥିପାଇଁ ?

**ଦାଦାଶ୍ରୀ :** ହିଂସକ ଭାବ ନାହିଁ ତା'ପଛରେ । ହିଂସକଭାବ ବିନା କ୍ରୋଧ ହୋଇ ହିଁ ପାରିବନି, କିନ୍ତୁ କ୍ରୋଧର ଏକ ବିଶେଷ ଦଶା ଅଛି ଯେ ଯଦି କେହି ନିଜ ପୁଅ, ନିଜ ମିତ୍ର ଅବା ନିଜ ସ୍ତ୍ରୀ ଉପରେ କ୍ରୋଧ କରେ ତେବେ ପୁଣ୍ୟ ବନ୍ଧାହୁଏ । କାହିଁକିନା ଏହା ଦେଖାଯାଏ ଯେ କ୍ରୋଧ କରିବା ପଛରେ ତା'ର ହେତୁ କ'ଣ ଅଛି ?

**ପ୍ରଶ୍ନକର୍ତ୍ତା :** ପ୍ରଶସ୍ତ କ୍ରୋଧ ।

**ଦାଦାଶ୍ରୀ :** ଅପ୍ରଶସ୍ତ କ୍ରୋଧକୁ ଖରାପ କୁହାଯାଏ ।

ତ' ଏହି କ୍ରୋଧରେ ମଧ୍ୟ ଏତିକି ଭେଦ ଅଛି । ଦ୍ୱିତୀୟତଃ,ପଇସା ପାଇଁ ପୁଅକୁ ଭଲମନ୍ଦ କହିବା ଯେ ତୁ ବ୍ୟାପାରରେ ଠିକ୍‌ରେ ଧ୍ୟାନ ଦେଉନାହୁଁ । ସେ କ୍ରୋଧ ଅଲଗା । ପିଲାମାନଙ୍କୁ ସୁଧାରିବା ପାଇଁ, ଚୋରୀ କରୁଥିବ, ଆଉ କିଛି ଓଲଟା-ସିଧା କରୁଥିବ, ସେଥିପାଇଁ ପୁଅକୁ ଗାଳିଦେବା, କ୍ରୋଧ କରିବା, ତେବେ ତା' ପାଇଁ ଭଗବାନ ପୁଣ୍ୟ କହିଛନ୍ତି ଯେ ଏହାର ଫଳ ପୁଣ୍ୟ ଅଟେ । ଭଗବାନ କେତେ ସମଝଦାର !

## କ୍ରୋଧ ଟାଳନ୍ତୁ ଏପରି

**ପ୍ରଶ୍ନକର୍ତ୍ତା :** ଆମେ କ୍ରୋଧ କାହା ଉପରେ କରୁ, ଖାସ କରି ଅଫିସରେ

ସେକ୍ରେଟାରୀ ଉପରେ କ୍ରୋଧ କରୁନାହୁଁ, ଏବଂ ହସ୍ପିଟାଲରେ ନର୍ସ ଉପରେ କ୍ରୋଧ କରୁନାହୁଁ, କିନ୍ତୁ ଘରେ ୱାଇଫ ଉପରେ ଆମେ କ୍ରୋଧ କରୁଛୁ ।

**ଦାଦାଶ୍ରୀ :** ଏଥିପାଇଁ ଯେବେ ଶହେ ଲୋକ ବସିଥିବେ ଆଉ ଶୁଣୁଥିବେ, ତେବେ ସମସ୍ତଙ୍କୁ କୁହେ ଯେ ଅଫିସରେ ବୋସ୍(ମାଲିକ) ଧମକାଏ ଅବା କେହି ଗାଳିଦିଏ, ତେବେ ଲୋକେ ସେ ସମସ୍ତଙ୍କ କ୍ରୋଧ ଘରେ ସ୍ତ୍ରୀ ଉପରେ ବାହାର କରନ୍ତି । ଏଥିପାଇଁ ମୋତେ କହିବାକୁ ପଡୁଛି ଯେ, 'ଆରେ ! ସ୍ତ୍ରୀ କୁ କାହିଁକି ଗାଳି ଦେଉଛ, ବିଚାରୀକୁ ! ବିନା କାରଣରେ ସ୍ତ୍ରୀକୁ ଗାଳି କରୁଛ ! ବାହାରେ ଯଦି କେହି ଧମକାଉଛି ତାଙ୍କ ସହ ଲଢ଼ ନା, ଏଠି କ'ଣ ପାଇଁ ଲଢୁଛ ବିଚାରୀ ସହ ?'

ଜଣେ ଭାଇ ଥିଲା, ସେ ମୋର ଅଳ୍ପ ଜଣା ଶୁଣା ଥିଲା । ସେ ମୋତେ ସବୁବେଳେ କହୁଥିଲା ଯେ, 'ସାହେବ, ଥରେ କେବେ ମୋ ଘରକୁ ଆସନ୍ତୁ!' ଚିନାଇ(ବୟନ ସମ୍ବନ୍ଧୀୟ) କାମ କରୁଥିଲା । ଥରେ ମୁଁ ସେ ରାସ୍ତାରେ ଯାଉଥିଲି ଆଉ ତା'ର ମୋ ସହ ଭେଟ ହୋଇଗଲା ଏବଂ କହିଲା, 'ମୋ ଘରକୁ ଚାଲନ୍ତୁ, ଅଳ୍ପ ସମୟ ପାଇଁ ।' ମୁଁ ତା' ଘରକୁ ଗଲି, ତା' ଘରେ ମାତ୍ର ଦୁଇଟି ରୁମ୍ ଥିଲା । ମୁଁ ପଚାରିଲି, 'ଆରେ, ଦୁଇଟି ରୁମ ତୋ ପାଇଁ ପର୍ଯ୍ୟାପ୍ତ ?'ସେ କହିଲା, 'ମୁ ତ' କାରୀଗର ଅଟେ ନା!' ଏହା ତ' ଆମ ସମୟର, ଭଲ ସମୟର କଥା କହୁଛି । ଏବେ ତ' ଗୋଟିଏ ରୁମରେ ରହିବାକୁ ପଡୁଛି, କିନ୍ତୁ ଭଲ ସମୟରେ ମଧ୍ୟ ବିଚରାର ଦୁଇଟି ହିଁ ରୁମ ଥିଲା ! ପୁଣି ମୁଁ ପଚାରିଲି, 'କ'ଣ ସ୍ତ୍ରୀ ସହ ତୋର କେବେ ମନମାଳିନ୍ୟ ହେଉନାହିଁ?' ତେବେ କହିଲା, 'ସ୍ତ୍ରୀକୁ କ୍ରୋଧ ଆସିଯାଏ କିନ୍ତୁ ମୁଁ କ୍ରୋଧ କରେ ନାହିଁ।' ମୁଁ ପଚାରିଲି, 'ଏପରି କାହିଁକି ?' ସେ କହିଲା, 'ସେ କ୍ରୋଧ କରିବ ଆଉ ମୁଁ ମଧ୍ୟ କ୍ରୋଧ କରିବି,ତେବେ ପୁଣି ଏ ଦୁଇଟି ରୁମରେ ମୁଁ କେଉଁଠି ଶୋଇବି ଆଉ ସେ କେଉଁଠି ଶୋଇବ ?!' ସେ ସେପଟକୁ ମୁହଁ କରି ଶୋଇଯିବ ଆଉ ମୁଁ ଏପଟକୁ ମୁହଁ କରି ଶୋଇଯିବି, ଏପରି ହାଲତରେ ତ' ମୋତେ ସକାଳେ ଚା' ମଧ୍ୟ ଭଲ ମିଳିବନି ! ସେ ହିଁ ମୋତେ ସୁଖ ଦିଏ । ତା' ପାଇଁ ହିଁ ମୋର ସୁଖ । ମୁଁ ପଚାରିଲି, 'ସ୍ତ୍ରୀ କେବେ କ୍ରୋଧ କରେ ତେବେ ?' ସେ କହିଲା, "ତା'କୁ ମନାଇ ଦିଏ । 'ସାଙ୍ଗ, ଛାଡ଼ ନା, ମୋ ହାଲତ ମୁଁ ହିଁ ଜାଣିଛି' ଏମିତି ସେମିତି କରିକି ମନାଇ ଦିଏ । କିନ୍ତୁ ତାକୁ ଖୁସିରେ ରଖେ । ବାହାରେ

କେବେ କେମିତି ମାରପିଟ କରିକି ଆସିଯାଏ କିନ୍ତୁ ଘରେ ତା' ସହ ମାରପିଟ କରେ ନାହିଁ।" ଆଉ କିଛି ଲୋକ ତ' ବାହାରୁ ମାଡ଼ ଖାଇକରି ଆସନ୍ତି ଏବଂ ଘରେ ମଧ୍ୟ ମାରପିଟ କରନ୍ତି ।

ଏମାନେ ତ' ସବୁବେଳେ କ୍ରୋଧ କରୁଛନ୍ତି । ଗାଈ-ମଇଁଷୀ ଆହୁରି ଭଲ ଯେ କ୍ରୋଧ ତ' କରୁନାହାନ୍ତି । ଜୀବନରେ କିଛି ଶାନ୍ତି ତ' ଥିବା ଦରକାର ନା ! ଦୁର୍ବଳତା ନ ରହିବା ଉଚିତ୍ । ଏମାନଙ୍କର ତ' ସବୁବେଳେ କ୍ରୋଧ ହୋଇଯାଉଛି । ତୁମେ ଗାଡ଼ିରେ ଆସିଛ ନା ? ଯଦି ଗାଡ଼ି ରାସ୍ତା ସାରା କ୍ରୋଧ କରି କରି ଚାଲେ ତେବେ କ'ଣ ହେବ ?

**ପ୍ରଶ୍ନକର୍ତ୍ତା :** ତେବେ ଏଠାକୁ ଆସି ହିଁ ପାରିବୁନି ।

**ଦାଦାଶ୍ରୀ :** ତା' ହେଲେ ତୁମେ ଯଦି ଏପରି କ୍ରୋଧ କରୁଛ, ତେବେ ତା'ର(ସ୍ତ୍ରୀ ର) ଗାଡ଼ି କିଭଳି ଚାଲୁଥିବ ? ତୁ(ସ୍ତ୍ରୀକୁ) ତ କ୍ରୋଧ କରୁନାହୁଁ ?

**ପ୍ରଶ୍ନକର୍ତ୍ତା :** କେବେ କେବେ ହୋଇଯାଏ ।

**ଦାଦାଶ୍ରୀ :** ଆଉ ଯଦି ଦୁହିଁଙ୍କୁ ହୋଇଯାଉଛି, ତେବେ ପୁଣି ବାକି କ'ଣ ରହିଲା ?

**ପ୍ରଶ୍ନକର୍ତ୍ତା :** ପତି-ପତ୍ନୀ ମଧ୍ୟରେ ଅଳ୍ପ-ବହୁତ କ୍ରୋଧ ତ' ହେବା ଉଚିତ ନା ?

**ଦାଦାଶ୍ରୀ :** ନା । ଏପରି କିଛି ନିୟମ ନାହିଁ । ପତି-ପତ୍ନୀ ମଧ୍ୟରେ ତ' ବହୁତ ଶାନ୍ତି ରହିବା ଉଚିତ୍ । ଯଦି ତାଙ୍କ ମଧ୍ୟରେ ଦୁଃଖ ଥାଏ ତେବେ ସେମାନେ ପତି-ପତ୍ନୀ କୁହାଯିବେ ନାହିଁ । ପ୍ରକୃତ ଫ୍ରେଣ୍ଡସିପ୍‌ରେ ଦୁଃଖ ନଥାଏ, ଯେବେ କି ଏ ତ' ସବୁଠୁ ବଡ଼ ଫ୍ରେଣ୍ଡସିପ୍ ଅଟେ ! ! ଏଠାରେ କ୍ରୋଧ ନହେବା ଉଚିତ୍ । ଏ ତ' ଲୋକମାନେ ଜବରଦସ୍ତି ମୁଣ୍ଡରେ ପୁରାଇ ଦେଇଛନ୍ତି, ନିଜର ହେଉଛି ଏଥିପାଇଁ କହିଦେଲେ ଯେ ନିୟମ ଏପରି ଅଟେ । ପତି-ପତ୍ନୀ ମଧ୍ୟରେ ତ' ଆଦୌ ଦୁଃଖ ନହେବା ଉଚିତ୍, ଭଲା ଅନ୍ୟ ସବୁ ଜାଗାରେ ହୋଇଯାଉ ।

# ମନମାନିର ମାଡ଼(ପରିଣାମ)

**ପ୍ରଶ୍ନକର୍ତ୍ତା :** ଘରେ ଅବା ବାହାରେ ସାଙ୍ଗମାନଙ୍କ ମଧ୍ୟରେ ସବୁ ଜାଗାରେ ସମସ୍ତଙ୍କ ମତ ଭିନ୍ନ ଭିନ୍ନ ହୋଇଥାଏ ଆଉ ସେଥିରେ ଆମ ମତ ଅନୁସାରେ ନହେଲେ ଆମକୁ କ୍ରୋଧ କ'ଣ ପାଇଁ ଆସେ ? ସେତେବେଳେ କ'ଣ କରିବା ଉଚିତ୍ ?

**ଦାଦାଶ୍ରୀ :** ସବୁ ଲୋକ ନିଜ ମତ ଅନୁସାରେ କରିବାକୁ ଯିବେ ତେବେ କ'ଣ ହେବ ? ଏପରି ବିଚାର କ'ଣ ପାଇଁ ଆସୁଛି ? ତୁରନ୍ତ ଭାବିବା ଉଚିତ ଯେ ଯଦି ସମସ୍ତେ ନିଜର ମନମାନୀ କରିବାକୁ ଲାଗିବେ, ତେବେ ଏଠାରେ ସବୁ କଂସାବାସନ ଭାଙ୍ଗି ପକେଇବେ ଆଉ ଖାଇବାକୁ ମଧ୍ୟ ମିଳିବନି । ଏଣୁ ମନମାନୀ କେବେ କରିବ ନାହିଁ । ମତ ଦେବ ହିଁ ନାହିଁ ତେବେ ଭୁଲ ସାବ୍ୟସ୍ତ ମଧ୍ୟ ହେବ ନାହିଁ । ଯାହାର ଗରଜ(ସ୍ୱାର୍ଥ) ଥିବ ସେ ମତ ରଖିବ, ଏଭଳି ବୁଝିନିଅ ।

**ପ୍ରଶ୍ନକର୍ତ୍ତା :** ଆମେ କେତେ ମଧ୍ୟ ଶାନ୍ତ ରହୁ କିନ୍ତୁ ସ୍ୱାମୀ କ୍ରୋଧ କରନ୍ତି ସେତେବେଳେ ଆମକୁ କ'ଣ କରିବା ଉଚିତ ?

**ଦାଦାଶ୍ରୀ :** ସେ କ୍ରୋଧ କରେ ଆଉ ତା' ସହ ଝଗଡ଼ା କରିବାର ଅଛି, ତେବେ ତୁମକୁ ମଧ୍ୟ କ୍ରୋଧ କରିବା ଉଚିତ୍ । ଅନ୍ୟଥା ଯଦି ଫିଲ୍ମ ବନ୍ଦ କରିବାକୁ ଚାହୁଁଛ ତେବେ ଶାନ୍ତ ହୋଇଯାଅ । ଫିଲ୍ମ ବନ୍ଦ କରିବାକୁ ଚାହୁଁ ନାହଁ ତେବେ ରାତିସାରା ଚାଲିବାକୁ ଦିଅ, କିଏ ମନା କରୁଛି ? କ'ଣ ତୁମକୁ ପସନ୍ଦ ଲାଗେ ଏପରି ଫିଲ୍ମ ?

**ପ୍ରଶ୍ନକର୍ତ୍ତା :** ନା, ଏପରି ଫିଲ୍ମ ପସନ୍ଦ ନୁହେଁ ।

**ଦାଦାଶ୍ରୀ :** କ୍ରୋଧ କରିକି କ'ଣ କରିବାର ଅଛି ? ସେ ଲୋକ ନିଜେ କ୍ରୋଧ କରେ ନାହିଁ, ଏ ତ 'ମେକାନିକାଲ ଏଡ଼ଜଷ୍ଟମେଣ୍ଟ'(ଡ଼ିସଚାର୍ଜ ହେଉଥିବା ମଣିଷର ପ୍ରକୃତି) କ୍ରୋଧ କରେ । ଏଥିପାଇଁ ପୁଣି ନିଜକୁ ମନରେ ପଶ୍ଚାତାପ ହୁଏ ଯେ କ୍ରୋଧ କରିନଥିଲେ ଭଲ ହୋଇଥାନ୍ତା ।

**ପ୍ରଶ୍ନକର୍ତ୍ତା :** ତା'କୁ ଥଣ୍ଡା କରିବାର ଉପାୟ କ'ଣ ?

**ଦାଦାଶ୍ରୀ :** ଯଦି ମେଶିନ୍ ଗରମ ଅଛି ଆଉ ଥଣ୍ଡା କରିବାର ଅଛି ତେବେ କିଛି ସମୟ ବନ୍ଦ ରଖିଲେ ଆପେ ଆପେ ଥଣ୍ଡା ହୋଇଯିବ, ଆଉ ଯଦି ହାତ ମାରିବା ବା ତା' ସହ ଖେଳିବା ତେବେ ଆମେ ଜଳିଯିବା ।

**ପ୍ରଶ୍ନକର୍ତ୍ତା :** ମୋ ସ୍ୱାମୀ ଏବଂ ମୋ ମଧ୍ୟରେ କ୍ରୋଧ ଏବଂ ଯୁକ୍ତିତର୍କ ହୋଇଯାଉଛି । ତେବେ ମୁଁ କ'ଣ କରିବି ?

**ଦାଦାଶ୍ରୀ :** କ୍ରୋଧ ତୁମେ କରୁଛ ନା ସେ ? କିଏ କରୁଛି ?

**ପ୍ରଶ୍ନକର୍ତ୍ତା :** ସେ, ପରେ ମୋ ଦ୍ୱାରା ମଧ୍ୟ ହୋଇଯାଏ ।

**ଦାଦାଶ୍ରୀ :** ତେବେ ଆପଣ ଭିତରୁ ହିଁ ନିଜକୁ ନିଜେ ଗାଳି ଦିଅନ୍ତୁ, 'କ'ଣ ପାଇଁ ତୁ ଏପରି କରୁଛୁ ? ପୂର୍ବରୁ ଯାହା କରିଛୁ ତାହା ଭୋଗିବାକୁ ହିଁ ହେବ ନା !' କିନ୍ତୁ ପ୍ରତିକ୍ରମଣ କରିବା ଦ୍ୱାରା ଏ ସବୁ ଦୋଷ ଶେଷ ହୋଇଯିବେ । ନଚେତ ଆମ ଦ୍ୱାରା ଦିଆଯାଇଥିବା ଦୁଃଖ ଆମକୁ ହିଁ ଭୋଗିବାକୁ ପଡ଼ିବ, ପୁଣି ଆମକୁ ଭୋଗିବାକୁ ପଡ଼େ । କିନ୍ତୁ ପ୍ରତିକ୍ରମଣ କରିବା ଦ୍ୱାରା କିଛି ଥଣ୍ଡା ପଡ଼ିଯାନ୍ତି ।

## ଏହା ତ' ଏକ ପ୍ରକାରର ପାଶବତା

**ପ୍ରଶ୍ନକର୍ତ୍ତା :** ଆମ ଦ୍ୱାରା କ୍ରୋଧ ହୋଇଯାଏ ଏବଂ ଗାଳି ବାହାରିଯାଏ ତେବେ କିଭଳି ସୁଧାରିବୁ ?

**ଦାଦାଶ୍ରୀ :** ଏପରି ଅଟେ ଯେ ଏ ଯେଉଁ କ୍ରୋଧ କରୁଛି ଆଉ ଗାଳି ଦେଉଛି, ସେ ସବୁ ଏଥିପାଇଁ ହୋଇଯାଉଛି ଯେ ନିଜର ନିଜ ଉପରେ କଣ୍ଟ୍ରୋଲ୍ ନାହିଁ । କଣ୍ଟ୍ରୋଲ୍ କରିବା ପାଇଁ କିଛି ବୁଝିନେବା ଉଚିତ । ଯଦି ଆମ ଉପରେ କେହି କ୍ରୋଧ କରେ, ତେବେ ଆମଦ୍ୱାରା ସହ୍ୟ ହେବ ନା ନାହିଁ, ଏହା ଭାବିବା ଉଚିତ୍ । ଆମେ କ୍ରୋଧ କରିବା, ତା' ପୂର୍ବରୁ ଯଦି ଆମ ଉପରେ କେହି କ୍ରୋଧ କରେ ତେବେ ଆମ ଦ୍ୱାରା ସହ୍ୟ ହେବ ? ଭଲ ଲାଗିବ ନା ନାହିଁ ? ଆମକୁ ଯେତିକି ଭଲ ଲାଗିବ, ସେତିକି ହିଁ ବ୍ୟବହାର ଅନ୍ୟମାନଙ୍କ ସହିତ କରିବା ଉଚିତ ।

ସେ ତୁମକୁ ଗାଳି ଦିଏ ଆଉ ତୁମକୁ କିଛି ଅସୁବିଧା ହୁଏ ନାହିଁ, ଡ଼ିପ୍ରେସନ୍

ଆସେ ନାହିଁ, ତେବେ ତୁମେ ମଧ୍ୟ କର, ନଚେତ୍ ବନ୍ଦ କରିଦିଅ । ଗାଳିଦେବା ହିଁ ଉଚିତ ନୁହେଁ । ଏହା ତ' ଏକ ପ୍ରକାରର ପାଶବତା ଅଟେ । ଅଣ୍ଡର ଡେଭଲପ୍ଡ ପିପଲ୍ସ, ଅନକଲ୍ଚର୍ଡ଼(ଅଳ୍ପ ବିକଶିତ ମଣିଷ, ଅସଂସ୍କୃତ) !

## ପ୍ରତିକ୍ରମଣ ହିଁ ପ୍ରକୃତ ମୋକ୍ଷମାର୍ଗ

ଆଗରୁ ତ' ଦୟା ରଖ, ଶାନ୍ତିରଖ, ସମତା ରଖ, କ୍ଷମା ରଖ, ଏପରି ଉପଦେଶ ଶିଖାଉଥିଲେ । ତେବେ ଏ ଲୋକେ କ'ଣ କୁହନ୍ତି 'ଆରେ ! ମୋତେ କ୍ରୋଧ ଆସିବାରେ ଲାଗିଛି ଆଉ ତୁ କହୁଛୁ ଯେ କ୍ଷମା ରଖ, କିନ୍ତୁ ମୁଁ କିଭଳି କ୍ଷମା ରଖିବି ? ଏଣୁ ଏମାନଙ୍କୁ କିଭଳି ଉପଦେଶ ଦେବା ଉଚିତ ଯେ "ତୁମକୁ କ୍ରୋଧ ଆସିଯାଏ ତେବେ ତୁମେ ଏହିପରି ମନରେ ପଶ୍ଚାତାପ କରିବ ଯେ 'ମୋର ଦୁର୍ବଳତା ଅଛି ଯେ ମୋ ଦ୍ୱାରା କ୍ରୋଧ ହୋଇଯାଏ । ଏହା ମୋ ଦ୍ୱାରା ଭୁଲ ହୋଇଗଲା ।' ଏପରି ପଶ୍ଚାତାପ କରିବ ଆଉ ଯଦି କେହି ଗୁରୁ ଥିବେ ତାଙ୍କର ସାହାଯ୍ୟ ନେବ ଏବଂ ପୁଣି ଥରେ ଏପରି ଦୁର୍ବଳତା ଉତ୍ପନ୍ନ ନହେଉ, ଏପରି 'ନିଶ୍ଚୟ'(ଦୃଢ଼ ସଂକଳ୍ପ) କରିବ । ତୁମେ ଏବେ କ୍ରୋଧର ରକ୍ଷଣ କରନାହିଁ, ଓଲଟା ତା'ର ପ୍ରତିକ୍ରମଣ କର ।"

ଅର୍ଥାତ ଦିନରେ କେତେ ଅତିକ୍ରମଣ ହେଉଛି ଆଉ କାହାସହ ହେଉଛି, ସେସବୁକୁ ନୋଟ୍ କରୁଥାଅ ଏବଂ ସେହି କ୍ଷଣି ପ୍ରତିକ୍ରମଣ କରିନିଅ ।

ପ୍ରତିକ୍ରମଣରେ କ'ଣ କରିବାକୁ ହେବ ? ତୁମକୁ କ୍ରୋଧ ହେଲା ଏବଂ ସାମନାବାଲା ବ୍ୟକ୍ତିକୁ ଦୁଃଖ ହେଲା, ତେବେ ତା'ର ଆତ୍ମାକୁ ସ୍ମରଣ କରି ତାଙ୍କ ଠାରୁ କ୍ଷମା ମାଗିନେବ । ଅର୍ଥାତ ଯାହା ହେଲା ତା'ର କ୍ଷମା ମାଗିନେବ ଏବଂ ପୁଣି କରିବି ନାହିଁ ଏପରି ପ୍ରତିଜ୍ଞା କରିବ, ଆଉ ଆଲୋଚନା କରିବା ମାନେ କ'ଣ, ଯେ ମୋ(ଦାଦାଶ୍ରୀ) ପାଖରେ ସ୍ୱୀକାର କରିବ ଯେ ମୋ ଦ୍ୱାରା ଏହି ଦୋଷ ହୋଇଗଲା ।

## ମନରେ ମଧ୍ୟ କ୍ଷମା ମାଗ

**ପ୍ରଶ୍ନକର୍ତ୍ତା :** ଦାଦାଜୀ, ପଶ୍ଚାତାପ ବା ପ୍ରତିକ୍ରମଣ କରିବା ସମୟରେ କେବେ କେବେ ଏପରି ଲାଗେ ଯେ କିଛି ଭୁଲ ହୋଇଗଲା, କାହା ଉପରେ କ୍ରୋଧ

ଆସିଗଲା, ସେତେବେଳେ ଭିତରେ ଦୁଃଖ ହୁଏ, ଯେ ଏହା ଭୁଲ ହୋଇଗଲା, କିନ୍ତୁ ସାମନାବାଲାକୁ କ୍ଷମା ମାଗିବା ପାଇଁ ସାହସ ହୁଏ ନାହିଁ ।

**ଦାଦାଶ୍ରୀ :** ଏଭଳି କ୍ଷମା ମାଗିବାର ହିଁ ନାହିଁ, ନଚେତ ପୁଣି ସେମାନେ ତା'ର ଦୂରୁପଯୋଗ କରିବେ । "ହଁ,ଏବେ ଆସିଲା ନା ଲାଇନକୁ ?" ଏପରି କହିବେ ! ନୋବଲ(ସମ୍ଭ୍ରାନ୍ତ ଶ୍ରେଣୀର) ଜାତି ନୁହେଁ ! ଏମାନେ କ୍ଷମା ମାଗିବା ଯୋଗ୍ୟ ଲୋକ ନୁହନ୍ତି । ଏଥିପାଇଁ ତା'ର ଶୁଦ୍ଧାତ୍ମାକୁ ସ୍ମରଣ କରି ମନରେ ହିଁ କ୍ଷମା ମାଗିନେବ । ହଜାରରେ କେଉଁଠି ଦଶଟି ମଣିଷ ଏପରି ବାହାରିବେ ଯେଉଁମାନେ କ୍ଷମା ମାଗିବା ପୂର୍ବରୁ ହିଁ କ୍ଷମା କରିଦେବେ ।

## ନଗଦ ପରିଣାମ, ହାର୍ଦ୍ଦିକ ପ୍ରତିକ୍ରମଣର

**ପ୍ରଶ୍ନକର୍ତ୍ତା :** କାହା ଉପରେ ବହୁତ କ୍ରୋଧ ହୋଇଗଲା, ସବୁ କହିସାରିବା ପରେ ଚୁପ ହୋଇଗଲୁ । ପରେ ଏ ଯାହାସବୁ କହିଦେଲୁ ତା' ପାଇଁ ହୃଦୟ ବାରମ୍ବାର ଜଳୁଥାଏ, ତେବେ ତା' ପାଇଁ ଗୋଟିଏ ରୁ ଅଧିକ ପ୍ରତିକ୍ରମଣ କରିବାକୁ ହେବ ?

**ଦାଦାଶ୍ରୀ :** ସେଥିରେ ଦୁଇ-ତିନି ଥର ହୃଦୟର ସହିତ ପ୍ରତିକ୍ରମଣ କରିବ ଆଉ ଏକଦମ୍ ଭଲଭାବରେ ହୋଇଗଲା ତେବେ ପୂରା ହୋଇଗଲା । " ହେ ଦାଦା ଭଗବାନ ! ମୋ ଦ୍ୱାରା ଜବରଦସ୍ତ କ୍ରୋଧ ହୋଇଗଲା, ସାମନାବାଲାକୁ ବହୁତ କଷ୍ଟ ହେଲା ! ସେଥିପାଇଁ କ୍ଷମା ମାଗୁଛି । ଆପଣଙ୍କ ସାନିଧ୍ୟରେ ଖୁବ୍ କ୍ଷମା ମାଗୁଛି ।

## ଦୋଷ, କିନ୍ତୁ ମୃତପ୍ରାୟ

**ପ୍ରଶ୍ନକର୍ତ୍ତା :** ଅତିକ୍ରମଣ ଦ୍ୱାରା ଯେଉଁ ଉତ୍ତେଜନା ହୋଇଥାଏ, ତାହା ପ୍ରତିକ୍ରମଣ ଦ୍ୱାରା ଶାନ୍ତ ହୋଇଯାଏ ?

**ଦାଦାଶ୍ରୀ :** ହଁ, ଶାନ୍ତ ହୋଇଯାଏ । ଚିକଣି ଫାଇଲ୍(ଯେଉଁ ବ୍ୟକ୍ତି ସହ ଗାଢ଼ ଋଣାନୁବନ୍ଧ) ହୋଇଥିବ, ସେଠାରେ ତ' ପାଞ୍ଚ-ପାଞ୍ଚ ହଜାର ପ୍ରତିକ୍ରମଣ କରିବାକୁ ପଡ଼େ, ତେବେ ଯାଇ ଶାନ୍ତ ହୁଏ । ରାଗ ବାହାରକୁ ଆସିନଥିବ କିନ୍ତୁ ବ୍ୟାକୁଳତା ହୋଇଯାଇଥିବ, ତେବେ ମଧ୍ୟ ତା'ର ପ୍ରତିକ୍ରମଣ ନକରିବା ତେବେ ସେତିକି ଦାଗ ଆମ ଉପରେ ରହିଯିବ । ପ୍ରତିକ୍ରମଣ କରିବା ଦ୍ୱାରା ସଫା

ହୋଇଯାଏ । ଅତିକ୍ରମଣ କଲ, ଏଥିପାଇଁ ପ୍ରତିକ୍ରମଣ କର ।

**ପ୍ରଶ୍ନକର୍ତ୍ତା :** କାହା ଉପରେ କ୍ରୋଧ ହୋଇଯିବା ପରେ ଧ୍ୟାନ ଆସେ ଏବଂ ସେହି କ୍ଷଣି ଆମେ ତାଙ୍କୁ କ୍ଷମା ମାଗିନେବୁ, ତେବେ ତାହା କ'ଣ କୁହାଯିବ ?

**ଦାଦାଶ୍ରୀ :** ଏବେ ଜ୍ଞାନ ନେବା ପରେ କ୍ରୋଧ ହୋଇଯାଏ, ଆଉ ପୁଣି କ୍ଷମା ମାଗିନେବ, ତେବେ କୌଣସି ଅସୁବିଧା ନାହିଁ । ହୋଇଗଲ ମୁକ୍ତ ! ଆଉ ଏପରି ପ୍ରତ୍ୟକ୍ଷରେ କ୍ଷମା ମାଗି ପାରୁନାହଁ, ତେବେ ମନେ ମନେ ମାଗିନେବ ତ' ହୋଇଗଲା ।

**ପ୍ରଶ୍ନକର୍ତ୍ତା :** ପ୍ରତ୍ୟକ୍ଷ ଅର୍ଥାତ ସମସ୍ତଙ୍କ ସାମନାରେ ?

**ଦାଦାଶ୍ରୀ :** କିଛି କଥା ନାହିଁ, ଏପରି ନମାଗି ସେମିତି ହିଁ ମନରେ ହିଁ ପ୍ରତିକ୍ରମଣ କରିନେବ ତେବେ ଚଳିବ । କାରଣ ଏ ଦୋଷ ଜୀବିତ ନହେଁ, ଏହା ଡିସ୍‌ଚାର୍ଜ ଅଟେ । ଡିସ୍‌ଚାର୍ଜ ଦୋଷ, ଅର୍ଥାତ ଏହା ଚାର୍ଜ ଦୋଷ ନୁହେଁ ! ଏଥିପାଇଁ ଏତେ ଖରାପ ପରିଣାମ ଆସିବ ନାହିଁ ।

## ପ୍ରତିଷ୍ଠା କରିବା ଦ୍ୱାରା ତିଷ୍ଠି ରହିଛି କଷାୟ

ଏସବୁ ତୁମେ ଚଳାଉ ନାହଁ, କ୍ରୋଧ-ମାନ-ମାୟା-ଲୋଭ ଆଦି କଷାୟ ଚଳାଉଛନ୍ତି । କଷାୟମାନଙ୍କର ହିଁ ରାଜୁତି ଚାଲିଛି । 'ନିଜେ କିଏ' ତାହା ହୋସ ରେ ଆସିବ, ତେବେ ଯାଇ କଷାୟ ଯିବ । କ୍ରୋଧ ହୁଏ ସେତେବେଳେ ପଶ୍ଚାତାପ ହୁଏ, କିନ୍ତୁ ଭଗବାନ ବତାଇଥିବା ପ୍ରତିକ୍ରମଣ କରିବା ନଆସେ ତେବେ କ'ଣ ହେବ ? ପ୍ରତିକ୍ରମଣ କରିବା ଆସୁଥାନ୍ତା ତେବେ ମୁକ୍ତି ମିଳିଯାନ୍ତା ।

ଅର୍ଥାତ୍ ଏ କ୍ରୋଧ-ମାନ-ମାୟା-ଲୋଭ ର ସୃଷ୍ଟି କେବେ ପର୍ଯ୍ୟନ୍ତ ଛିଡ଼ା ହୋଇଥିବ ? 'ମୁଁ ଚନ୍ଦୁଲାଲ ଅଟେ ଏବଂ ମୁଁ ଏପରି ଅଟେ' ଏପରି 'ନିଶ୍ଚୟ'(ଦୃଢ଼ ଭାବ) ଅଛି ସେତେ ପର୍ଯ୍ୟନ୍ତ ଛିଡ଼ା ହୋଇ ରହିବ । ଯେତେ ପର୍ଯ୍ୟନ୍ତ ଆମେ ପ୍ରତିଷ୍ଠା କରିଛନ୍ତି ଯେ 'ମୁଁ ଚନ୍ଦୁଲାଲ ଅଟେ', ଏ ଲୋକମାନେ ପ୍ରତିଷ୍ଠା କଲେ ଆଉ ଆମେ ତାହାକୁ ମାନିନେଲେ ଯେ 'ମୁଁ ଚନ୍ଦୁଲାଲ ଅଟେ', ସେତେ ପର୍ଯ୍ୟନ୍ତ ଏ କ୍ରୋଧ-ମାନ-ମାୟା-ଲୋଭ ଭିତରେ ରହିବେ ।

ନିଜର ପ୍ରତିଷ୍ଠା କେବେ ସମାପ୍ତ ହେବ, ଯେବେ 'ମୁଁ ଶୁଦ୍ଧାତ୍ମା ଅଟେ' ଏହା ହୋସ୍‌ରେ ଆସିବ ତେବେ । ଅର୍ଥାତ ନିଜର ସ୍ୱରୂପକୁ ଆସିବା, ତେବେ ପ୍ରତିଷ୍ଠା ଭାଙ୍ଗିଯିବ । ତେବେ ଯାଇ କ୍ରୋଧ-ମାନ-ମାୟା-ଲୋଭ ଯିବେ ଅନ୍ୟଥା ଯିବେ ନାହିଁ । ମାରିଲେ ମଧ୍ୟ ଯିବେ ନାହିଁ ଆଉ ଓଲଟା ବଢ଼ିବେ । ଜଣକୁ ମାରିବ ତେବେ ଅନ୍ୟ ଜଣେ ବଢ଼ିବ ଏବଂ ତା'କୁ ମାରିଲେ ଆଉଜଣେ ବଢ଼ିବ ।

## ଯେଉଁଠି କ୍ରୋଧ ଦୁର୍ବଳ, ସେଠାରେ ମାନ ତଗଡ଼ା

ଜଣେ ମହାରାଜ କୁହନ୍ତି, ମୁଁ କ୍ରୋଧ କୁ ଦାବି-ଦାବି ନିର୍ମୂଳ କରିପକାଇଲି । ମୁଁ କହିଲି, " ତା'ର ପରିଣାମ ସ୍ୱରୂପ ଏହି 'ମାନ' ନାମକ ମଇଁଷି ଅଧିକ ତଗଡ଼ା ହୋଇଗଲା ।' ମାନ ତଗଡ଼ା ହୋଇ ଚାଲିଥାଏ, କାହିଁକିନା ମାୟାର ଏ ପୁତ୍ର ମରିବେ, ଏପରି ନୁହେଁ । ତାଙ୍କର ଉପାୟ କରିବା, ତେବେ ସେମାନେ ଯିବେ, ନଚେତ ସେମାନେ ଯିବାବାଲାଙ୍କ ମଧ୍ୟରେ ନୁହେଁ । ଏମାନେ ମାୟାର ସନ୍ତାନ ଅଟନ୍ତି । ସେ ମାନ ନାମକ ମଇଁଷି ଏତେ ତଗଡ଼ା ହେଲା, 'ମୁଁ କ୍ରୋଧକୁ ଦବାଇ ଦେଲି, ମୁଁ କ୍ରୋଧକୁ ଦବାଇ ଦେଲି ।' ସେ ପୁଣି ତଗଡ଼ା ହେଲା । ଏହା ଅପେକ୍ଷା ତ' ଚାରିଜଣ ସାରା ସମାନ ଥିଲେ, ତାହା ଭଲ ଥିଲା ।

## କ୍ରୋଧ ଏବଂ ମାୟା ଅଟନ୍ତି ରକ୍ଷକ

କ୍ରୋଧ ଏବଂ ମାୟା, ସେମାନେ ତ' ରକ୍ଷକ ଅଟନ୍ତି । ସେମାନେ ତ' ଲୋଭ ଏବଂ ମାନର ରକ୍ଷକ ଅଟନ୍ତି । ଲୋଭର ଯଥାର୍ଥ ରକ୍ଷକ ମାୟା ଏବଂ ମାନର ଯଥାର୍ଥ ରକ୍ଷକ କ୍ରୋଧ । ତଥାପି ମାନ ପାଇଁ ଅଳ୍ପ ବହୁତ ମାୟାର ଉପଯୋଗ ହୁଏ, କପଟ କରନ୍ତି । କପଟ କରି ମଧ୍ୟ ମାନ ପ୍ରାପ୍ତ କରି ନିଅନ୍ତି, କ'ଣ ଏପରି କରୁଥିବେ ଲୋକେ ?

ଆଉ କ୍ରୋଧ କରି ଲୋଭ କରି ନିଅନ୍ତି । ଯିଏ ଲୋଭୀ ସେ କ୍ରୋଧୀ ନଥାଏ ଆଉ ଯଦି କ୍ରୋଧ କରେ ତେବେ ବୁଝିନେବ ଯେ ତା'କୁ ଲୋଭରେ କିଛି ବାଧା ଆସିଛି, ଏଥିପାଇଁ କ୍ରୋଧ କରୁଛି । ନଚେତ ଲୋଭୀ ତ' ଓଲଟା ତା'କୁ କେହି ଗାଳି ଦେଉ ତଥାପି କୁହେ, "ମୋତେ ତ' ମୋ ଟଙ୍କା ମିଳିଗଲା, ସେ

ଭଲା ଚିତ୍କାର କରୁଥାଉ ।” ଲୋଭୀ ଏପରି ଅଟନ୍ତି, କାରଣ କପଟ ସବୁ ଦିଗରୁ ରକ୍ଷଣ କରିବ ହିଁ ନା ! କପଟ ଅର୍ଥାତ ମାୟା ଏବଂ କ୍ରୋଧ, ଏସବୁ ରକ୍ଷକ ଅଟନ୍ତି ।

କ୍ରୋଧ ତ’, ନିଜ ମାନ ଉପରେ ଆଞ୍ଚ ଆସେ, ତେବେ କ୍ରୋଧ କରିଦିଏ । ନିଜର ମାନଭଙ୍ଗ ହୁଏ, ସେଠାରେ ।

କ୍ରୋଧ ଭୋଳା ଅଟେ । ଭୋଳାର ପ୍ରଥମେ ନାଶ ହୁଏ । କ୍ରୋଧ ତ’ ଗୋଳା-ବାରୁଦ ଅଟେ ଆଉ ଗୋଳା-ବାରୁଦ ଥିବ, ସେଠାରେ ସେନା ଲଢ଼ିବେ ହିଁ । କ୍ରୋଧ ଗଲା, ପୁଣି ସେନା କ’ଣ ପାଇଁ ଲଢ଼ିବ । ପୁଣି ତ’ ଏରା-ଗେରା (ଅନ୍ୟ ଦୋଷ) ସବୁ ଦୌଡ଼ି ଚାଲିଯିବେ । କେହି ତିଷ୍ଠି ପାରିବେନି ।

## କ୍ରୋଧର ସ୍ୱରୂପ

କ୍ରୋଧ, ତାହା ଉଗ୍ର ପରମାଣୁ ଅଟେ । ଆତସବାଜି ଭିତରେ ବାରୁଦ ଭରା ହୋଇଥିବ ଏବଂ ତାହା ଫୁଟି ଯାଏ ତେବେ ଜ୍ୱାଳା ବିସ୍ଫୋରଣ ହୁଏ । ଆଉ ଯେବେ ଭିତରେ ଥିବା ବାରୁଦ ସରିଯାଏ, ତେବେ ଆତସବାଜି ଆପେ ଆପେ ଶାନ୍ତ ହୋଇଯାଏ । କ୍ରୋଧ ମଧ୍ୟ ଏପରି ଅଟେ । କ୍ରୋଧ, ତାହା ଉଗ୍ର ପରମାଣୁ ଅଟେ, ଆଉ ତାହା ଯେବେ ‘ବ୍ୟବସ୍ଥିତ’ର ନିୟମ ଅନୁସାରେ ଫୁଟେ, ସେତେବେଳେ ସବୁ ଦିଗରୁ କୁହୁଳିବାକୁ ଲାଗେ । ଉଗ୍ରତାକୁ କ୍ରୋଧ କୁହନ୍ତି ନାହିଁ । ଯେଉଁ କ୍ରୋଧରେ *ତଂତ୍* ଥାଏ, ତାହାକୁ କ୍ରୋଧ କୁହାଯାଏ । କ୍ରୋଧ କେତେବେଳେ କୁହାଯିବ ଯେ ଯେବେ ଅର୍ନ୍ତଦାହ ହେବ । ଅର୍ନ୍ତଦାହ ହେବ ଆଉ ଜ୍ୱାଳା ଭଡ଼କୁଥିବ ଏବଂ ସାମ୍ନାବାଲା ପର୍ଯ୍ୟନ୍ତ ମଧ୍ୟ ତାହାର ପ୍ରଭାବ ପହଞ୍ଚେ । ତାହା *କୁଢ଼ନ* କୁହାଯାଏ ଆଉ *ଅଜଂପା*ରେ ନିଜେ ଏକା ଏକା ଭିତରେ ଭିତରେ ଜଳୁଥାଏ, କିନ୍ତୁ ଉଭୟଥିରେ *ତଂତ୍* ଥାଏ । ଯେବେ କି ଉଗ୍ରତା ଅଲଗା ଜିନିଷ ଅଟେ ।

## ଘୁଟନ(ଅର୍ନ୍ତଦାହ) ହେବା, ସହିବା, ତାହା ମଧ୍ୟ କ୍ରୋଧ

କ୍ରୋଧବାଲା ବାଣୀ ଯଦି ନବାହାରିବ ତେବେ ସାମନାବାଲାକୁ କ୍ଷତ ହେବ ନାହିଁ । ମୁହଁରେ କହିଲେ ଯେ କେବଳ ତା’କୁ କ୍ରୋଧ କୁହାଯାଏ, ଏପରି ନୁହେଁ । ଯଦି ଅର୍ନ୍ତଦାହ ହେଉଛି ତେବେ ତାହା ମଧ୍ୟ କ୍ରୋଧ ଅଟେ । ତାହାକୁ ସହିବା, ସେ

ତ’ ଡବଲ(ଦୋହରା) କ୍ରୋଧ ଅଟେ । ସହିବା ଅର୍ଥାତ ଦବାଇ ରଖିବା । ତାହା ତ’, ଯେବେ ଦିନେ ସ୍ପ୍ରୀଙ୍ଗ ଛିଟିକିବ ତେବେ ଜଣା ପଡ଼ିବ । ସହିବା କ’ଣ ପାଇଁ ? ଏହାର ତ’ ଜ୍ଞାନ ଦ୍ୱାରା ସମାଧାନ ବାହାର କରିନେବା ।

## କ୍ରୋଧରେ ବଡ଼ ହିଂସା

ବୁଦ୍ଧି ଇମୋଶନାଲ ହୁଏ, ଜ୍ଞାନ ମୋଶନରେ ରୁହେ । ଯେପରି ଟ୍ରେନ୍ ମୋଶନରେ ଚ଼ଲେ, ଯଦି ତାହା ଇମୋଶନାଲ ହୋଇଯିବ ତେବେ ?

**ପ୍ରଶ୍ନକର୍ତ୍ତା :** ଏକ୍ସିଡ଼େଣ୍ଟ ହୋଇଯାଏ ।

**ଦାଦାଶ୍ରୀ :** ଏମିତି-ସେମିତି କରି କରି ଚାଲିବ ତେବେ ଏକ୍ସିଡ଼େଣ୍ଟ ହୋଇଯିବ । ଏହିପରି ମଣିଷ ଯେବେ ଇମୋଶନାଲ ହୁଏ, ତେବେ ଅନେକ ଜୀବ ଭିତରେ ମରିଯାନ୍ତି । କ୍ରୋଧ ହେଲା କ୍ଷଣି ଅନେକ ଛୋଟ ଛୋଟ ଜୀବ ମରିକରି ଶେଷ ହୋଇଯାନ୍ତି, ଆଉ ପୁଣି ନିଜେ ଦାବିକରେ ଯେ, “ମୁଁ ତ’ ଅହିଂସା ଧର୍ମର ପାଳନ କରୁଛି, ଜୀବ-ହିଂସା ତ’ କରେ ହିଁ ନାହିଁ ।” ଆରେ, କିନ୍ତୁ କ୍ରୋଧ ଦ୍ୱାରା ତ’ କେବଳ ଜୀବ ହିଁ ମାରୁଛୁ, ଇମୋଶନାଲ ହୋଇକରି !

## କ୍ରୋଧକୁ ଜିତି ପାରିବା ଏପରି

ଦ୍ରବ୍ୟ ଅର୍ଥାତ ବାହାରର ବ୍ୟବହାର, ସେଥିରେ ପରିବର୍ତ୍ତନ ହୁଏ ନାହିଁ କିନ୍ତୁ ଯଦି ଭାବ ବଦଳିଯାଏ ତେବେ ବହୁତ ହୋଇଗଲା ।

କେହି କୁହେ ଯେ କ୍ରୋଧ ବନ୍ଦ କରିବାର ଅଛି, ତେବେ ଆଜି ହିଁ କ୍ରୋଧ ବନ୍ଦ ହୋଇଯିବ ନାହିଁ । କ୍ରୋଧକୁ ତ ଚିହ୍ନିବାକୁ ପଡ଼ିବ ଯେ କ୍ରୋଧ କ’ଣ ଅଟେ ? କାହିଁକି ସୃଷ୍ଟି ହୁଏ ? ତାହାର ଜନ୍ମ କେଉଁ ଆଧାରରରେ ହୁଏ ? ତା’ ମା କିଏ ? ବାପା କିଏ ? ସବୁ ଅନୁସନ୍ଧାନ ପରେ କ୍ରୋଧକୁ ଚିହ୍ନିହେବ ।

## ଯେ ମୁକ୍ତ ହୋଇସାରିଛି ସେ ହିଁ ମୁକ୍ତ କରାଇପାରିବେ

ତୁମକୁ ସବୁ ବାହାର କରିବାର ଅଛି ? କ’ଣ କ’ଣ ବାହାର କରିବାର ଅଛି, ବତାଅ । ଲିଷ୍ଟ(ସୂଚି) ବନାଇ ମୋତେ ଦିଅ । ସବୁ ବାହାର କରିଦେବି ।

କ'ଣ ତୁମେ କ୍ରୋଧ-ମାନ-ମାୟା-ଲୋଭ ଦ୍ୱାରା ବନ୍ଧା ହୋଇଛ ?

**ପ୍ରଶ୍ନକର୍ତ୍ତା :** ଏକଦମ୍ ।

**ଦାଦାଶ୍ରୀ :** ତେବେ ବନ୍ଧା ହୋଇଥିବା ବ୍ୟକ୍ତି ନିଜକୁ ନିଜେ କିପରି ମୁକୁଳାଇ ପାରିବ ?

**ପ୍ରଶ୍ନକର୍ତ୍ତା :** ତା'କୁ ଅନ୍ୟ କାହାର ସାହାରା ନେବାକୁ ପଡ଼ିବ ।

**ଦାଦାଶ୍ରୀ :** ବନ୍ଧା ହୋଇଥିବା ବ୍ୟକ୍ତିର ହେଲ୍ପ ନେବା ଉଚିତ୍ ?

**ପ୍ରଶ୍ନକର୍ତ୍ତା :** ଯିଏ ସ୍ୱତନ୍ତ୍ର, ତାଙ୍କରି ହେଲ୍ପ ନେବା ଉଚିତ୍ ।

**ଦାଦାଶ୍ରୀ :** ଆମେ କାହାକୁ ପଚାରିବା ଯେ, 'ଭାଇ, କେହି ମୁକୁଳି ସାରିଥିବା ବାଲା ଅଛକି ଏଠାରେ ? ମୁକ୍ତ ଅଛ ? ତେବେ ମୋର ହେଲ୍ପ କର ।' ଅର୍ଥାତ୍ ଯିଏ ମୁକ୍ତ ହୋଇସାରିଥିବ, ସେ ହିଁ ମୁକ୍ତ କରାଇ ପାରିବ । ଅନ୍ୟ କେହି କରିପାରିବେ ନାହିଁ ।

## କ୍ରୋଧ-ମାନ-ମାୟା-ଲୋଭର ଖୋରାକ(ପୋଷଣ)

କିଛି ଲୋକ ଯେଉଁମାନେ ଜାଗୃତ ଅଟନ୍ତି, ସେମାନେ କୁହନ୍ତି ଯେ ଏ ଯେଉଁ କ୍ରୋଧ ହୋଇଯାଉଛି ତାହା ଆମକୁ ପସନ୍ଦ ନୁହେଁ, ତଥାପି କରିବାକୁ ପଡୁଛି ।

ଆଉ କିଛି ତ' କ୍ରୋଧ କରନ୍ତି ଏବଂ କୁହନ୍ତି, 'କ୍ରୋଧ କରିବୁନି ତେବେ ଆମ ଗାଡ଼ି ଚାଲିବ ହିଁ ନାହିଁ, ଆମ ଗାଡ଼ି ବନ୍ଦ ହୋଇଯିବ ।' ଏପରି ମଧ୍ୟ କୁହନ୍ତି ।

କ୍ରୋଧ-ମାନ-ମାୟା-ଲୋଭ ନିରନ୍ତର ତା'ର(ସେ ବ୍ୟକ୍ତିର) ନିଜର ହିଁ ଚୋରିକରି ଖାଆନ୍ତି, କିନ୍ତୁ ଲୋକଙ୍କୁ ବୁଝାପଡ଼େ ନାହିଁ । ଏ ଚାରିଜଣଙ୍କୁ ଯଦି ତିନିବର୍ଷ ଭୋକିଲା ରଖିବ, ତେବେ ସେମାନେ ଦୌଡ଼ି ପଳାଇବେ । କିନ୍ତୁ ଯେଉଁ ଖୋରାକ ପାଇଁ ସେମାନେ ବଞ୍ଚିଛନ୍ତି, ସେ ଖୋରାକ କ'ଣ ? ଯଦି ଏହା ନଜାଣିବ, ତେବେ ସେମାନେ ଭୋକରେ କେମିତି ମରିବେ ? ତା'ର(ସେ ବ୍ୟକ୍ତିର) ସମଝଶକ୍ତି ନଥିବା କାରଣରୁ ହିଁ ସେମାନଙ୍କୁ ଖୋରାକ ମିଳିଚାଲେ । ସେମାନେ କିପରି ଜୀବିତ

ଅଛନ୍ତି ? ଆଉ ତାହା ମଧ୍ୟ ଅନାଦି କାଳରୁ ଜୀବିତ ଅଛନ୍ତି ! ଏଥିପାଇଁ ସେମାନଙ୍କର ଖୋରାକ ବନ୍ଦ କରିଦିଅ । ଏପରି ବିଚାର ତ' କାହାକୁ ମଧ୍ୟ ଆସେ ନାହିଁ ଆଉ ସମସ୍ତେ ଜବରଦସ୍ତି ସେମାନଙ୍କୁ ବାହାର କରିବାରେ ଲାଗିଛନ୍ତି । ସେ ଚାରିଜଣ ଏମିତି ହିଁ ଚାଲିଯିବେ, ଏପରି ନୁହେଁ । ସେମାନେ ତ' ଯେବେ ଆତ୍ମା ବାହାରିଯାଏ, ସେତେବେଳେ ଭିତରର ସମସ୍ତେ ଝଡ଼ାପୋଛା ପାଇଁ ବାହାରନ୍ତି । ସେମାନଙ୍କୁ ହିଂସକ ମାଡ଼ ଦରକାର ନାହିଁ, ସେମାନଙ୍କୁ ତ ଅହିଂସକ ମାଡ଼ ଦରକାର ।

ଆଚାର୍ଯ୍ୟ ଶିଷ୍ୟକୁ କେତେବେଳେ ଗାଳି ଦିଅନ୍ତି ? କ୍ରୋଧ ଆସେ, ସେତେବେଳେ । ସେ ସମୟରେ ଯଦି କେହି କୁହେ, 'ମହାରାଜ, ଏ ପିଲାକୁ କ'ଣ ପାଇଁ ଗାଳି କରୁଛ ? ସେତେବେଳେ ମହାରାଜ କହିବେ, 'ସେ ତ' ଗାଳି ଖାଇବାର ଯୋଗ୍ୟ ଅଟେ ।' ବାସ୍, ପୁଣି ତ' ହୋଇଗଲା ସର୍ବନାଶ । ଏପରି କହିବା, ତାହା ହିଁ କ୍ରୋଧର ଖୋରାକ । କ୍ରୋଧ କରି ତାହାର ରକ୍ଷଣ କରିବା, ତାହା ତା'ର ଖୋରାକ ଅଟେ ।

ଏ କ୍ରୋଧ-ମାନ-ମାୟା-ଲୋଭ ଙ୍କୁ ଯଦି ତିନି ବର୍ଷ ଖୋରାକ ନମିଳେ ତେବେ ପୁଣି ସେମାନେ ମନକୁ ମନ ପଳାଇବେ । ଆମକୁ କହିବାକୁ ହିଁ ପଡ଼ିବ ନାହିଁ । କାରଣ ପ୍ରତ୍ୟେକ ବସ୍ତୁ ନିଜ-ନିଜର ଖୋରାକ ଦ୍ୱାରା ଜୀବିତ ରୁହନ୍ତି ଆଉ ସଂସାରର ଲୋକେ କ'ଣ କରନ୍ତି ? ସବୁବେଳେ ଏ କ୍ରୋଧ-ମାନ-ମାୟା-ଲୋଭ ଙ୍କୁ ଖୋରାକ ଦେଇ ଚାଲିଥାନ୍ତି । ସବୁଦିନ ଖାଇବାକୁ ଦିଅନ୍ତି ଆଉ ପୁଣି ଏମାନେ ତଗଡ଼ା ହୋଇ ବୁଲୁଥାନ୍ତି ।

ଯଦି ପିଲାମାନଙ୍କୁ ମାରୁଥିବ, ବହୁତ କ୍ରୋଧିତ ହୋଇ ପିଟୁଥିବ, ଆଉ ପୁଣି ସ୍ତ୍ରୀ କୁହେ ଯେ, ବିଚାରା ପିଲାଟାକୁ କ'ଣ ପାଇଁ ଏତେ ମାରିଲ ? ତେବେ କହିବ, 'ତୁ ବୁଝିପାରିବୁ ନାହିଁ, ଏ ମାଡ଼ ଖାଇବା ଯୋଗ୍ୟ ଅଟେ ।' ଏହାଦ୍ୱାରା କ୍ରୋଧ ବୁଝିଯାଏ ଯେ 'ଆରେ ଓ୍ୱାଃ, ମୋତେ ଖୋରାକ ଦେଲା ! ଭୁଲ ଅଛି ଏପରି ବୁଝୁନାହିଁ ଆଉ ମାଡ଼ ଖାଇବା ଯୋଗ୍ୟ ଏପରି ଅଭିପ୍ରାୟ ଦେଉଛି, ଏଥିପାଇଁ ଏ ମୋତେ ଖୋରାକ ଦେଉଛି ।' ଏହାକୁ ଖୋରାକ ଦେବା କୁହନ୍ତି । ଆମେ କ୍ରୋଧକୁ ଏନକରେଜ(ପ୍ରୋତ୍ସାହିତ) କରିବା, ତା'କୁ ଭଲ ବୋଲି କହିବା, ତେବେ ତାହା କ୍ରୋଧକୁ ଖୋରାକ ଦେବା କୁହାଯିବ । କ୍ରୋଧ ପାଇଁ ଯଦି ଏପରି ବୁଝିବା ଯେ,

'କ୍ରୋଧ ଖରାପ ଅଟେ' ତେବେ ତା'କୁ ଖୋରାକ ଦେଲେ ନାହିଁ, ଏପରି କୁହାଯିବ । କ୍ରୋଧର ପ୍ରଶଂସା କଲ, ତା' ପକ୍ଷ ନେଲ, ତେବେ ତା'କୁ ଖୋରାକ ମିଳିଗଲା । ଖୋରାକ ଦ୍ୱାରା ହିଁ ତ' ସେ ବଞ୍ଚି ରହିଛି । ଲୋକମାନେ ତ' ତା'ର ପକ୍ଷ ନିଅନ୍ତି ନା ?

କ୍ରୋଧ-ମାନ-ମାୟା-ଲୋଭ, କାହାକୁ ମଧ୍ୟ ମୁଁ ରକ୍ଷଣ ଦେଇନାହିଁ । କ୍ରୋଧ ହୋଇଯିବା ପରେ ଯଦି କେହି କୁହେ ଯେ, 'ଏ କ୍ରୋଧ କ'ଣ ପାଇଁ କରୁଛ ?' ତେବେ ମୁଁ କହିଦିଏ ଯେ, 'ଏ କ୍ରୋଧ ବହୁତ ଖରାପ ଜିନିଷ ଅଟେ, ମୋ ନିର୍ବଳତାର କାରଣରୁ ହୋଇଗଲା ।' ଅର୍ଥାତ୍ ମୁଁ ରକ୍ଷଣ କଲିନାହିଁ । କିନ୍ତୁ ଲୋକମାନେ ରକ୍ଷଣ କରନ୍ତି ।

ଏ ସାଧୁ ଗଂଜେଇ ଟାଣୁଥିବେ, ଆଉ ଆମେ କହିବା, 'ସାହେବ, ଆପଣ ଗଂଜେଇ ଟାଣୁଛନ୍ତି ?' ତେବେ ଯଦି ସେ କହନ୍ତି, 'ଗଂଜେଇରେ କିଛି ହାନି ନାହିଁ ।' ତେବେ ବଢ଼ିଯିବ ।

ଏ ଚାରିଜଣ, କ୍ରୋଧ-ମାନ-ମାୟା-ଲୋଭ, ସେମାନଙ୍କ ମଧ୍ୟରୁ ଜଣଙ୍କ ଉପରେ ପ୍ରେମ ଅଧିକ ରୁହେ, ଅନ୍ୟ ଜଣଙ୍କ ଉପରେ ତା'ଠାରୁ କମ୍ ରୁହେ । ଏହିପରି ଯାହାର ପ୍ରଶଂସା ଅଧିକ, ତାହାର ପ୍ରିୟତା ଅଧିକ ।

## ସ୍ଥୁଳ କର୍ମ : ସୂକ୍ଷ୍ମ କର୍ମ

ସ୍ଥୁଳ କର୍ମର ଅର୍ଥ କ'ଣ, ତାହା ବୁଝିନିଅ । ତୋତେ ଏକଦମ କ୍ରୋଧ ଆସିଲା, ତୁ କ୍ରୋଧ କରିବାକୁ ଚାହୁଁନାହୁଁ ତଥାପି ଆସିଗଲା, ଏପରି ହୁଏ ନା ନାହିଁ ?

**ପ୍ରଶ୍ନକର୍ତ୍ତା :** ହୁଏ ।

**ଦାଦାଶ୍ରୀ :** ସେ କ୍ରୋଧ ଆସିଲା ତେବେ ତାହାର ଫଳ ଏହିଠାରେ ତୁରନ୍ତ ମିଳିଯାଏ । ଲୋକମାନେ କୁହନ୍ତି ଯେ, "ଛାଡ଼ନା ତା' କଥା, ସେ ତ ଏମିତି ହିଁ ବହୁତ କ୍ରୋଧୀ ।" କେହି ତା'କୁ ସାମନାସାମନି ଚାପୁଡ଼ା ମଧ୍ୟ ମାରିଦେଇ

ପାରେ । ଅର୍ଥାତ କ୍ରୋଧ ହେବା ତାହା ସ୍ଥୁଳ କର୍ମ ଅଟେ । ଏବଂ କ୍ରୋଧ ହେଲା, ତା'ପଛରେ ଆଜି ତୋର ଭାବ କ'ଣ ଅଛି ଯେ' କ୍ରୋଧ କରିବା ହିଁ ଉଚିତ୍ ।' ତେବେ ତାହା ପୁଣି ପରଜନ୍ମରେ କ୍ରୋଧର ହିସାବ ଅଟେ । ତୋର ଆଜିର ଭାବ ଅଛି ଯେ କ୍ରୋଧ କରିବା ଉଚିତ ନୁହେଁ, ତୋ ମନରେ 'ନିଶ୍ଚୟ'(ସଂକଳ୍ପ) ଥିବ ଯେ କ୍ରୋଧ କରିବାର ହିଁ ନାହିଁ, ତଥାପି ଯଦି ହୋଇଯାଏ, ତେବେ ପରଜନ୍ମ ପାଇଁ ତୋତେ ବନ୍ଧନ ରହିଲା ନାହିଁ । ଯଦି ସ୍ଥୁଳ କର୍ମରେ ତୋ ଦ୍ୱାରା କ୍ରୋଧ ହେଲା ତେବେ ତୋତେ ଏହି ଜନ୍ମରେ ମାଡ଼ ଖାଇବାକୁ ପଡ଼ିବ । କିନ୍ତୁ ତୋତେ ପରଜନ୍ମ ପାଇଁ ବନ୍ଧନ ରହିବ ନାହିଁ, କାହିଁକିନା ସୂକ୍ଷ୍ମ କର୍ମରେ ତୋର 'ନିଶ୍ଚୟ'(ଭାବ) ଅଛି ଯେ କ୍ରୋଧ କରିବା ଉଚିତ ନୁହେଁ ।ଆଉ ଆଜି କେହି ବ୍ୟକ୍ତି କାହା ଉପରେ କ୍ରୋଧ କରୁନାହିଁ, ତଥାପି ମନରେ ଯଦି କୁହେ ଯେ, "ଏଭଳି ଲୋକମାନଙ୍କ ଉପରେ କ୍ରୋଧ କରିବ ତେବେ ଯାଇ ଏମାନେ ସିଧା ହେବେ, ଏପରି ଅଟନ୍ତି ।" ତେବେ ଏହା ଦ୍ୱାରା ପର ଜନ୍ମରେ ସେ ପୁଣି କ୍ରୋଧ ବାଲା ହୋଇଯିବ । ଅର୍ଥାତ ବାହାରେ ଯେଉଁ କ୍ରୋଧ ହୁଏ, ତାହା ସ୍ଥୁଳ କର୍ମ ଅଟେ । ଆଉ ସେହି ସମୟରେ ଭିତରେ ଯେଉଁ ଭାବ ହୁଏ, ତାହା ସୂକ୍ଷ୍ମ କର୍ମ ଅଟେ । ଯଦି ଏହା ଆମେ ବୁଝିନେବା ତେବେ ସ୍ଥୁଳ କର୍ମରେ ଆଦୌ ବନ୍ଧନ ନାହିଁ ।ଏଥିପାଇଁ ଏ 'ସାଇନ୍ସ'(ବିଜ୍ଞାନ) ମୁଁ ନୂଆ ପ୍ରକାରର ଦେଇଛି । ଆଜି ପର୍ଯ୍ୟନ୍ତ 'ସ୍ଥୁଳ କର୍ମରୁ ବନ୍ଧନ ହୁଏ', ଏପରି ଲୋକଙ୍କ ମୁଣ୍ଡରେ ପଶିଯାଇଛି ଆଉ ଏଥିପାଇଁ ଲୋକମାନେ ଶଙ୍କାରେ ଅଛନ୍ତି ।

## ଭେଦଜ୍ଞାନ ଦ୍ୱାରା ଦୂରହୁଏ କଷାୟ

**ପ୍ରଶ୍ନକର୍ତ୍ତା :** ଚାରି କଷାୟଙ୍କୁ ଜିତିବା ପାଇଁ କ'ଣ କିଛି ପ୍ରାଥମିକ ଭୂମିକା ପ୍ରସ୍ତୁତ କରିବା ଆବଶ୍ୟକ ? ଯଦି ଆବଶ୍ୟକ ତେବେ ତା' ପାଇଁ କ'ଣ କରିବା ଉଚିତ୍ ?

**ଦାଦାଶ୍ରୀ :** ଏପରି ଅଟେ, ଯେ କ୍ରୋଧ-ମାନ-ମାୟା-ଲୋଭ, ଏ ଚାରିହେଁ ଯଦି ଚାଲିଯିବେ ତେବେ ବାସ୍ ସେ ଭଗବାନ ହୋଇଗଲା !

ଭଗବାନ ତ' କ'ଣ କହିଛନ୍ତି ଯେ, 'ଯଦି ତୋ କ୍ରୋଧ ଏପରି ଯେ ତୋ ନିଜ ମାମୁଁ ଉପରେ ତୁ କ୍ରୋଧ କରୁଛୁ, ତେବେ ତାଙ୍କ ମନ ତୋ ଠାରୁ ଅଲଗା

ହୋଇଯାଏ, ସାରା ଜୀବନ ପାଇଁ ଅଲଗା ହୋଇଯାଏ, ତେବେ ତୋ କ୍ରୋଧ ମିଥ୍ୟା ଅଟେ ।' ସେ କ୍ରୋଧ ଯାହା ସାମ୍ନାବାଲାର ମନକୁ ବର୍ଷେ-ଦୁଇବର୍ଷ ପାଇଁ ଅଲଗା କରିଦିଏ, ପରେ ପୁଣି ମିଶିଯାଏ, ତାହାକୁ ଅପ୍ରତ୍ୟାଖାନି କ୍ରୋଧ କୁହାଯାଏ, ଯାହା ସାମନାବାଲାର ମନକୁ ବ୍ରେକ୍‌ଡାଉନ କରି ପକାଏ, ତାହାକୁ ଅନ୍ତିମ ଶ୍ରେଣିର ୟୁଜ୍‌ଲେସ୍ କ୍ରୋଧ କୁହାଯାଏ, ତାହାକୁ ଅନନ୍ତାନୁବନ୍ଧି କ୍ରୋଧ କୁହାଯାଏ । ଏବଂ ଲୋଭ ମଧ୍ୟ ଏପରି, ପୁଣି ମାନ, ସେମାନେ ସବୁ ଏପରି ମଜ୍‌ଭୁତ୍ ଥା'ନ୍ତି ଯେ ସେମାନଙ୍କର ଚାଲିଯିବା ପରେ ପୁଣି ମଣିଷ ଠିକ୍ ରାସ୍ତାକୁ ଆସିଯାଏ ଏବଂ ଗୁଣସ୍ଥାନ ପ୍ରାପ୍ତ କରେ, ନଚେତ ଗୁଣସ୍ଥାନରେ ହିଁ ଆସି ନଥାନ୍ତା । କ୍ରୋଧ-ମାନ-ମାୟା-ଲୋଭ, ଏ ଚାରି ଅନନ୍ତାନୁବନ୍ଧି କଷାୟ ଚାଲିଯିବେ ତେବେ ମଧ୍ୟ ବହୁତ ହୋଇଗଲା ।

ଏବେ ଯେବେ 'ଜିନ'ଙ୍କ କଥା ଶୁଣିବେ, ତେବେ ଯାଇ ଏମାନେ ଯିବେ । 'ଜିନ' ଅର୍ଥାତ ଆତ୍ମଜ୍ଞାନୀ । ପୁଣି ସେ କୌଣସି ମଧ୍ୟ ଧର୍ମର ଆତ୍ମଜ୍ଞାନୀ ହୁଅନ୍ତୁ, ବେଦାନ୍ତର ହୁଅନ୍ତୁ ଅବା ଜୈନଙ୍କର ହୁଅନ୍ତୁ । କିନ୍ତୁ ଆତ୍ମଜ୍ଞାନୀ ହୋଇଥିବା ଦରକାର । ତାଙ୍କଠାରୁ ଶୁଣେ ତେବେ ଶ୍ରାବକ ହୁଏ । ଆଉ ଶ୍ରାବକ ହୋଇଯାଏ ତେବେ ତା'ର ଅନନ୍ତାନୁବନ୍ଧି କଷାୟ ଚାଲିଯାଏ । ପୁଣି ଆପେ ଆପେ ହିଁ କ୍ଷୟୋପସମ ହୋଇଚାଲେ ।

ଏବେ ଅନ୍ୟ ଉପାୟ ଏହା ଯେ ମୁଁ ତା'ର ଭେଦଜ୍ଞାନ କରାଇଦିଏ । ସେତେବେଳେ ସବୁ କଷାୟ ଚାଲିଯାଏ,ଦୂର ହୋଇଯାଏ । ଏହା ଏହି କାଳର ଆଶ୍ଚର୍ଯ୍ୟ ଅଟେ । ଏଥିପାଇଁ "ଅକ୍ରମ ବିଜ୍ଞାନ" କହିଛି ନା !

**-ଜୟ ସଚ୍ଚିଦାନନ୍ଦ**

# ଆତ୍ମଜ୍ଞାନ ପ୍ରାପ୍ତି ପାଇଁ ପ୍ରତ୍ୟକ୍ଷ ଲିଙ୍କ୍ !

"ମୁଁ ତ କିଛି ଲୋକଙ୍କୁ ନିଜ ହାତରେ ସିଦ୍ଧି ପ୍ରଦାନ କରିବି । ପରେ ଅନୁଗାମୀ ଦରକାର କି ନାହିଁ? ପରେ ଲୋକଙ୍କୁ ମାର୍ଗ ତ ଦରକାର ନା ?"

- ଦାଦାଶ୍ରୀ

ପରମ ପୂଜ୍ୟ ଦାଦାଶ୍ରୀ ଗାଁ'-ଗାଁ', ଦେଶ-ବିଦେଶ ପରିଭ୍ରମଣ କରି ମୁମୁକ୍ଷୁମାନଙ୍କୁ ସତ୍‌ସଙ୍ଗ ଏବଂ ଆତ୍ମଜ୍ଞାନର ପ୍ରାପ୍ତି କରାଉଥିଲେ । ସେ ନିଜର ଜୀବନ କାଳ ମଧ୍ୟରେ ପୂଜ୍ୟ ଡା. ନୀରୂବହନ ଅମୀନ(ନୀରୂମାଁ)ଙ୍କୁ ଆତ୍ମଜ୍ଞାନ ପ୍ରାପ୍ତି କରାଇବାର ଜ୍ଞାନସିଦ୍ଧି ପ୍ରଦାନ କରିଥିଲେ । ଦାଦାଶ୍ରୀଙ୍କ ଦେହ ବିଲୟ ପରେ ନୀରୂମା ସେହିପରି ମୁମୁକ୍ଷୁମାନଙ୍କୁ ସତ୍‌ସଙ୍ଗ ଏବଂ ଆତ୍ମଜ୍ଞାନର ପ୍ରାପ୍ତି, ନିମିତ୍ତ ଭାବରେ କରାଉଥିଲେ । ପୂଜ୍ୟ ଦୀପକଭାଇ ଦେଶାଇଙ୍କୁ ଦାଦାଶ୍ରୀ ସତ୍‌ସଙ୍ଗ କରିବା ପାଇଁ ସିଦ୍ଧି ପ୍ରଦାନ କରିଥିଲେ । ନୀରୂମାଁଙ୍କ ଉପସ୍ଥିତିରେ ହିଁ ତାଙ୍କର ଆଶୀର୍ବାଦ ଦ୍ୱାରା ପୂଜ୍ୟ ଦୀପକଭାଇ ଦେଶ-ବିଦେଶରେ ଅନେକ ଜାଗାକୁ ଯାଇ ମୁମୁକ୍ଷୁମାନଙ୍କୁ ଆତ୍ମଜ୍ଞାନ ପ୍ରାପ୍ତି କରାଉଥିଲେ, ଯାହା ନୀରୂମାଙ୍କ ଦେହବିଲୟ ପରେ ଆଜି ମଧ୍ୟ ଚାଲୁଅଛି । ଏହି ଆତ୍ମଜ୍ଞାନ ପ୍ରାପ୍ତି ପରେ ହଜାର ହଜାର ମୁମୁକ୍ଷୁ ସଂସାରରେ ରହି, ନିଜର ସାଂସାରିକ ଦାୟିତ୍ୱ ବହନ କରି ମଧ୍ୟ ମୁକ୍ତ ରହି ଆତ୍ମରମଣତାର ଅନୁଭବ କରୁଛନ୍ତି ।

ଗ୍ରନ୍ଥରେ ମୁଦ୍ରିତ ବାଣୀ ମୋକ୍ଷାର୍ଥୀମାନଙ୍କୁ ମାର୍ଗଦର୍ଶନ ପାଇଁ ଅତ୍ୟନ୍ତ ଉପଯୋଗୀ ସିଦ୍ଧ ହେବ, କିନ୍ତୁ ମୋକ୍ଷପ୍ରାପ୍ତି ପାଇଁ ଆତ୍ମଜ୍ଞାନ ପ୍ରାପ୍ତ କରିବା ଅତ୍ୟନ୍ତ ଆବଶ୍ୟକ ଅଟେ । ଅକ୍ରମ ମାର୍ଗ ଦ୍ୱାରା ଆତ୍ମଜ୍ଞାନ ପ୍ରାପ୍ତିର ମାର୍ଗ ଆଜି ମଧ୍ୟ ଖୋଲାଅଛି । ଯେପରି ପ୍ରଜ୍ୱଳିତ ଦୀପ ହିଁ ଅନ୍ୟ ଦୀପକୁ ପ୍ରଜ୍ୱଳିତ କରିପାରେ, ସେହିପରି ପ୍ରତ୍ୟକ୍ଷ ଆତ୍ମଜ୍ଞାନୀଙ୍କଠାରୁ ଆତ୍ମଜ୍ଞାନ ପ୍ରାପ୍ତ କରି ହିଁ ନିଜର ଆତ୍ମା ଜାଗୃତ ହୋଇପାରେ ।

## ଶୁଦ୍ଧାତ୍ମାଙ୍କ ପ୍ରତି ପ୍ରାର୍ଥନା

## (ପ୍ରତିଦିନ ଥରେ ବୋଲନ୍ତୁ)

ହେ ଅନ୍ତର୍ଯ୍ୟାମି ପରମାତ୍ମା ! ଆପଣ ପ୍ରତ୍ୟେକ ଜୀବମାତ୍ର ଭିତରେ ବିରାଜମାନ ଅଛନ୍ତି, ଠିକ ସେହିପରି ମୋ ଭିତରେ ମଧ୍ୟ ବିରାଜମାନ ଅଛନ୍ତି । ଆପଣଙ୍କ ସ୍ୱରୂପ ହିଁ ମୋ ସ୍ୱରୂପ ଅଟେ । ମୋ ସ୍ୱରୂପ ଶୁଦ୍ଧାତ୍ମା ଅଟେ ।

ହେ ଶୁଦ୍ଧାତ୍ମା ଭଗବାନ ! ମୁଁ ଆପଣଙ୍କୁ ଅଭେଦ ଭାବରେ ଅତ୍ୟନ୍ତ ଭକ୍ତିପୂର୍ବକ ନମସ୍କାର କରୁଛି । ଅଜ୍ଞାନତାବଶ ମୁଁ ଯେଉଁ ଯେଉଁ**ଦୋଷ କରିଛି, ସେ ସବୁ ଦୋଷଗୁଡ଼ିକୁ ଆପଣଙ୍କ ସମ୍ମୁଖରେ ପ୍ରକାଶ କରୁଛି । ସେ ସବୁ ପାଇଁ ହୃଦୟପୂର୍ବକ ବହୁତ ପଶ୍ଚାତାପ କରୁଛି ଏବଂ ଆପଣଙ୍କୁ କ୍ଷମା-ପ୍ରାର୍ଥନା କରୁଛି । ହେ ପ୍ରଭୁ ! ମୋତେ କ୍ଷମା କରନ୍ତୁ, କ୍ଷମା କରନ୍ତୁ, କ୍ଷମା କରନ୍ତୁ ଆଉ ପୁଣି ଏପରି ଦୋଷ ନ କରେ, ଏପରି ଆପଣ ମୋତେ ଶକ୍ତି ଦିଅନ୍ତୁ, ଶକ୍ତି ଦିଅନ୍ତୁ, ଶକ୍ତି ଦିଅନ୍ତୁ ।

ହେ ଶୁଦ୍ଧାତ୍ମା ଭଗବାନ ! ଆପଣ ଏପରି କୃପା କରନ୍ତୁ ଯେପରି ମୋତେ ଭେଦଭାବ ଛୁଟିଯାଉ ଏବଂ ଅଭେଦ ସ୍ୱରୂପ ପ୍ରାପ୍ତ ହେଉ । ମୁଁ ଆପଣଙ୍କ ସହ ଅଭେଦ ସ୍ୱରୂପରେ ତନ୍ମୟାକାର ରୁହେଁ ।

** ଯେଉଁ ଯେଉଁ ଦୋଷ ହୋଇଛି, ସେ ସବୁକୁ ମନରେ ପ୍ରକାଶ କରନ୍ତୁ ।

## ପ୍ରତିକ୍ରମଣ ବିଧି

ପ୍ରତ୍ୟକ୍ଷ ଦାଦା ଭଗବାନଙ୍କ ସାକ୍ଷୀରେ, ଦେହଧାରୀ (ଯାହା ପ୍ରତି ଦୋଷ ହୋଇଥିବ, ସେ ବ୍ୟକ୍ତିର ନାମ) ଙ୍କ ମନ-ବଚନ-କାୟା ଏବଂ ଭାବକର୍ମ-ଦ୍ରବ୍ୟକର୍ମ-ନୋକର୍ମ ରୁ ଭିନ୍ନ, ଏପରି ହେ ଶୁଦ୍ଧାତ୍ମା ଭଗବାନ, ଆପଣଙ୍କ ସାକ୍ଷୀରେ, ଆଜି ଦିନ ପର୍ଯ୍ୟନ୍ତ ମୋ ଦ୍ୱାରା ଯେଉଁ ଯେଉଁ**ଦୋଷ ହୋଇଛି, ସେ ସବୁ ପାଇଁ ମୁଁ କ୍ଷମା ମାଗୁଛି । ହୃଦୟପୂର୍ବକ ବହୁତ ପଶ୍ଚାତାପ କରୁଛି । ମୋତେ କ୍ଷମା କରନ୍ତୁ ଏବଂ ଏପରି ଦୋଷ କେବେ ମଧ୍ୟ କରିବିନି, ଏପରି ଦୃଢ଼ 'ନିଶ୍ଚୟ' କରୁଛି । ସେଥିପାଇଁ ମୋତେ ପରମ ଶକ୍ତି ଦିଅନ୍ତୁ ।

** କ୍ରୋଧ-ମାନ-ମାୟା-ଲୋଭ, ବିଷୟ-ବିକାର, କଷାୟ ଇତ୍ୟାଦି ଦ୍ୱାରା କାହାରିକୁ ମଧ୍ୟ ଦୁଃଖ ପହଞ୍ଚାଇଥିବ, ସେ ଦୋଷଗୁଡ଼ିକୁ ମନରେ ସ୍ମରଣ କରନ୍ତୁ ।

# ପ୍ରାତଃ ବିଧି

(ପ୍ରତି ଦିନ ଥରେ କରନ୍ତୁ)

(ଶୁଦ୍ଧାତ୍ମାଙ୍କ ଲକ୍ଷ୍ୟ ସହିତ ପଢ଼ନ୍ତୁ)

- ଶ୍ରୀ ସୀମନ୍ଧର ସ୍ୱାମୀଙ୍କୁ ନମସ୍କାର କରୁଛି । (୫)
- ବାତ୍ସଲ୍ୟମୂର୍ତ୍ତି 'ଦାଦା ଭଗବାନ'ଙ୍କୁ ନମସ୍କାର କରୁଛି । (୫)
- ପ୍ରାପ୍ତ ମନ-ବଚନ-କାୟା ଦ୍ୱାରା ଏହି ସଂସାରର କୌଣସି ଜୀବକୁ କିଞ୍ଚିତ୍‌ମାତ୍ର ମଧ୍ୟ ଦୁଃଖ ନ ହେଉ, ନ ହେଉ, ନ ହେଉ । (୫)
- କେବଳ ଶୁଦ୍ଧାତ୍ମା ଅନୁଭବ ଛଡ଼ା ଏହି ସଂସାରର କୌଣସି ବିନାଶୀ ବସ୍ତୁ ମୋତେ ଦରକାର ନାହିଁ । (୫)
- ପ୍ରକଟ ଜ୍ଞାନୀପୁରୁଷ ଦାଦା ଭଗବାନଙ୍କ ଆଜ୍ଞାରେ ହିଁ ନିରନ୍ତର ରହିବା ପାଇଁ ପରମ ଶକ୍ତି ପ୍ରାପ୍ତ ହେଉ, ପ୍ରାପ୍ତ ହେଉ, ପ୍ରାପ୍ତ ହେଉ । (୫)
- ଜ୍ଞାନୀପୁରୁଷ 'ଦାଦା ଭଗବାନ'ଙ୍କ ବୀତରାଗ ବିଜ୍ଞାନର ଯଥାର୍ଥ ରୂପରେ, ସମ୍ପୂର୍ଣ୍ଣ-ସର୍ବାଙ୍ଗ ରୂପରେ କେବଳଜ୍ଞାନ, କେବଳଦର୍ଶନ ଏବଂ କେବଳଚାରିତ୍ରରେ ପରିଣମନ ହେଉ, ପରିଣମନ ହେଉ, ପରିଣମନ ହେଉ । (୫)



# दादा भगवान फाउन्डेशन के द्वारा प्रकाशित पुस्तकें

१. ज्ञानी पुरुष की पहचान
२. सर्व दु :खो से मुक्ति
३. कर्म का सिद्धांत
४. आत्मबोध
५. मैं कौन हूँ ?
६.वर्तमान तीर्थकंर श्री सीमंधर स्वामी
७.भुगते उसी की भूल
८. एडजस्ट एवरीव्हेयर
९. टकराव टालिए
१०. हुआ सो न्याय
११. चिंता
१२. क्रोध
१३. प्रतिक्रमण
१४. दादा भगवान कौन ?
१५. पैसों का व्यवहार
१६. अंत : करण का स्वरुप
१७. जगत कर्ता
१८. त्रिमंत्र
१९. भावना से सुधरे जन्मोंजन्म
२०. माता-पिता और बच्चों का व्यवहार
२१. प्रेम
२२. समझ से प्राप्त ब्रह्मचर्य
२३. दान
२४. मानव धर्म
२५. सेवा-परोपकार
२६. मृत्यु समय, पहले और पश्चात
२७. निजदोष दर्शन से...निर्दोष
२८. पति-पत्नि का दिव्य व्यवहार
२९. क्लेश रहित जीवन
३०. गुरु-शिष्य
३१. अहिंसा
३२. सत्य-असत्य के रहस्य
३३. चमत्कार
३४. पाप-पुण्य
३५. वाणी,व्यवहार में...
३६. कर्म का विज्ञान
३७. आप्तवाणी - १
३८. आप्तवाणी - २
३९. आप्तवाणी - ३
४०. आप्तवाणी - ४
४१. आप्तवाणी - ५
४२. आप्तवाणी - ६
४३. आप्तवाणी - ७
४४. आप्तवाणी - ८
४५. समझ से प्राप्त ब्रह्मचर्य (पूर्वार्ध-उत्तरार्ध)

• ଦାଦା ଭଗବାନ ଫାଉଣ୍ଡେଶନ ଦ୍ୱାରା ଗୁଜରାଟୀ ଭାଷାରେ ବି ୫୫ ପୁସ୍ତକ ପ୍ରକାଶିତ ହୋଇଛି । ୱେବସାଇଟ୍ **www.dadabhagwan.org** ରେ ମଧ୍ୟ ଆପଣ ଏ ସମସ୍ତ ପୁସ୍ତକ ପ୍ରାପ୍ତ କରିପାରିବେ ।

• ଦାଦା ଭଗବାନ ଫାଉଣ୍ଡେଶନ ଦ୍ୱାରା ପ୍ରତ୍ୟେକ ମାସ ହିନ୍ଦୀ, ଗୁଜରାଟୀ ତଥା ଇଂରାଜୀ ଭାଷାରେ "ଦାଦାବାଣୀ" ମାଗାଜିନ୍ ପ୍ରକାଶିତ ହେଉଛି ।

**ଓଡ଼ିଆ ପୁସ୍ତକ** : ୧) ଆତ୍ମସାକ୍ଷାତ୍କାର ୨) ଘର୍ଷଣ ଟାଳନ୍ତୁ ୩) ମୁଁ କିଏ ?
୪) ଏଡ଼ଜଷ୍ଟ ଏଭ୍ରିହ୍ୱେୟାର ୫) ଚିନ୍ତା ୬) କ୍ରୋଧ
୭) ମାନବ ଧର୍ମ

## ପ୍ରାପ୍ତିସ୍ଥାନ

## ଦାଦା ଭଗବାନ ପରିବାର


ଅଡାଲଜ : ତ୍ରିମନ୍ଦିର,ସୀମନ୍ଧର ସିଟୀ,ଅହମଦାବାଦ-କଲୋଲ ହାଇୱେ, ପୋଷ୍ଟ-ଅଡ଼ାଲଜ, ଜିଲ୍ଲା-ଗାନ୍ଧିନଗର,ଗୁଜରାଟ-୩୮୨୪୨୧ ,ଫୋନ-(୦୭୯)୩୯୮୩୦୧୦୦

ରାଜକୋଟ : ତ୍ରିମନ୍ଦିର,ଅହମଦାବାଦ-ରାଜକୋଟ ହାଇୱେ, ତରଘଡିୟା ଚୋକଡ଼ି (ସର୍କଲ), ପୋ-ମାଲିୟାସଣ,ଜିଲ୍ଲା-ରାଜକୋଟ,ଫୋନ-୯୨୭୪୧୧୧୩୯୩

ଭୁଜ୍ : ତ୍ରିମନ୍ଦିର, ହିଲ୍ ଗାର୍ଡେନର ପଛ,ଏୟାରପୋର୍ଟ ରୋଡ,(୦୨୮୩୨) ୨୯୦୧୨୩

ଗୋଧ୍ରା : ତ୍ରିମନ୍ଦିର,ଭାମେୟା ଗାଁ, ଏକ୍ସିଆଲ ଗୋଡାଉନ୍ ସାମନାରେ,ଗୋଧ୍ରା । (ଜି-ପଂଚମହାଲ) ଫୋନ-(୦୨୬୭୨) ୨୬୨୩୦୦

ମୋର୍‌ବୀ :ତ୍ରିମନ୍ଦିର, ମୋରବୀ-ନବଲଖି ହାଇୱେ,ପୋ :ଜୟପୁର,ଜିଲ୍ଲା-ରାଜକୋଟ , (୦୨୮୨୨)୨୯୭୦୯୭

ଅମ୍‌ରେଲି : ତ୍ରିମନ୍ଦିର,ଲିଲିୟା ରୋଡ,ବାଇପାସ ଚୋକଡି,ଖାରାବାଡି,୯୯୨୪୩୪୪୪୬୦

ସୁରେନ୍ଦ୍ରନଗର :ତ୍ରିମନ୍ଦିର,ସୁରେନ୍ଦ୍ରନଗର-ରାଜକୋଟ ହାଇୱେ,ଲୋକ ବିଦ୍ୟାଳୟ ପାଖ,ମୂଳି ରୋଡ,୯୮୭୯୨୩୨୮୭୭

ଅହମଦାବାଦ :ଦାଦା ଦର୍ଶନ,୫,ମମତାପାର୍କ ସୋସାଇଟୀ,ନବ ଗୁଜରାଟ କଲେଜ ପଛ,ଉସ୍ମାନପୁରା,ଅହମଦାବାଦ-୩୮୦୦୧୪,ଫୋନ-(୦୭୯)୨୭୫୪୦୪୦୮

ବଡୋଦରା : ଦାଦା ମନ୍ଦିର,୧୭,ମାମା କି ପୋଲ-ମୁହଲ୍ଲା,ରାବପୁରା ପୋଲିସ ଷ୍ଟେସନ ପାଖ,ସଲାଟ ୱାଡା,ବଡୋଦରା,୯୯୨୪୩୪୩୩୩୫

ମୁମ୍ବାଇ: ୯୩୨୩୫୨୮୯୦୧ , ବାଙ୍ଗାଲୋର :୯୫୯୦୯୭୯୦୯୯, କୋଲକତା:୦୩୩-୩୨୯୩୩୮୮୫, ଜଲନ୍ଧର: ୯୮୧୪୦୬୩୦୪୩, ଜୟପୁର:୯୩୫୧୪୦୮୨୮୫, ହାଇଦ୍ରାବାଦ : ୯୯୮୯୮୭୭୭୮୬,ଇନ୍ଦୋର :୯୮୯୩୫୪୫୩୫୧ , ଅମରାବତୀ : ୯୪୨୨୯୧୫୦୬୪,ରାୟପୁର:୯୩୨୯୫୨୩୭୩୭ , ଭିଲାଈ: ୯୮୨୭୪୮୧୩୩୬ , ଦିଲ୍ଲୀ:୯୮୧୦୦୯୮୫୬୪,ଭୋପାଲ୍: ୯୪୨୫୦୨୪୪୦୫,ଚେନ୍ନାଇ:୯୩୮୦୧୫୯୯୫୭ ଓଡିଶା:୮୭୬୩୦୭୩୧୧୧

**www.dadabhagwan.org**



## କ୍ରୋଧ ଅପେକ୍ଷା ଶୀଳର ତାପ ଅଧିକ

କ୍ରୋଧ-ମାନ-ମାୟା-ଲୋଭ, ଏ ସବୁ ନିର୍ବଳତା ଅଟେ । ଯିଏ ବଳବାନ, ତା'ଙ୍କୁ କ୍ରୋଧ କରିବାର ଆବଶ୍ୟକତା କେଉଁଠି ରହିଲା ? କିନ୍ତୁ ଏମାନେ ତ' କ୍ରୋଧର ଯେତିକି ତାପ ଅଛି, ସେହି ତାପ ଦ୍ୱାରା ସାମ୍ନାବାଲାଙ୍କୁ ବଶୀଭୂତ କରିବା ପାଇଁ ଯା'ନ୍ତି କିନ୍ତୁ ଯାହାର କ୍ରୋଧ ନାହିଁ, ତା' ପାଖରେ କିଛି ତ' ଥିବ ନା ? ତା'ର ଶୀଳ ନାମକ ଯେଉଁ ଚାରିତ୍ର ଥାଏ, ତାହାଦ୍ୱାରା ପଶୁପକ୍ଷୀ ମାନେ ମଧ୍ୟ ବଶୀଭୂତ ହୋଇଯାନ୍ତି । ବାଘ, ସିଂହ, ଶତ୍ରୁ ଇତ୍ୟାଦି, ପୂରା ସେନା ସମସ୍ତେ ବଶୀଭୂତ ହୋଇଯାନ୍ତି ।

-ଦାଦାଶ୍ରୀ



dadabhagwan.org

Printed in India

Price ₹10